କିଶୋର ସଂସାର—୪

# ଗ୍ରୀକ୍ ପୁରାଣ ଗପ

ଲେଖକ :

ଶ୍ରୀ ଶରତ କୁମାର ମହାନ୍ତି




ପ୍ରକାଶକ :

ଅଗ୍ରଦୂତ

କଟକ-୨

# ଗ୍ରୀକ୍ ପୁରାଣ ଗପ

ଲେଖକ :

ଶ୍ରୀ ଶରତ କୁମାର ମହାନ୍ତି

ପ୍ରକାଶକ :

**ଅଗ୍ରଦୂତ**

ବାଂକା ବଜାର, କଟକ-୨

ପ୍ରଥମ ପ୍ରକାଶ : ୧୯୮୧

ଦ୍ୱିତୀୟ ପ୍ରକାଶ : ୧୯୮୮

ମୁଦ୍ରଣ :

ଓଡ଼ିଶା ପ୍ରିଣ୍ଟିଂ ୱାର୍କସ୍

ମିଶନ ରୋଡ଼, କଟକ-୧

ମୂଲ୍ୟ : ଛଅ ଟଙ୍କା ମାତ୍ର

# ସୂଚୀ


| ବିଷୟ | ପୃଷ୍ଠା |
| --- | --- |
| ୧ । ଗ୍ରୀସ୍‌ର ଦେବ ଦେବୀ | ୧ |
| ୨ । କ୍ରୀଟ୍ ଦ୍ୱୀପର ଷଣ୍ଢାସୁର | ୧୦ |
| ୩ । ପ୍ରଥମ ଉଡ଼ନ୍ତା ମଣିଷ ଡ଼େଡ଼ାଲସ୍ | ୧୪ |
| ୪ । ମାନବ ବନ୍ଧୁ ପ୍ରୋମିଥିଅସ୍ | ୧୮ |
| ୫ । ପଣ୍ଡୋରା ଓ ଦୁଃଖର ବାକ୍ସ | ୨୧ |
| ୬ । ବୀର ପର୍ସିଅସ୍ ଓ ରାକ୍ଷସୀ ମେଡୁସା | ୨୩ |
| ୭ । ଟାଣ୍ଟାଲସ୍‌ଙ୍କ ଦଣ୍ଡ | ୨୯ |
| ୮ । ପିଲପ୍ସ ଓ ହିପୋଡ଼ାମିଆ | ୩୧ |
| ୯ । ଦେବତା ଅସୁର ଯୁଦ୍ଧ | ୩୪ |
| ୧୦ । ଦାନବ ଶ୍ରେଷ୍ଠ ଟାଇଫୁନ୍ | ୩୬ |
| ୧୧ । କାଡ଼ମସ୍ ଓ ଜଞ୍ଜରେପ | ୪୧ |
| ୧୨ । ଫ୍ରିକସସ୍ | ୪୪ |
| ୧୩ । ଆର୍ଗୋ ଅଭିଯାନ | ୪୬ |
| ୧୪ । ଜାସନ୍‌ଙ୍କ କାର୍ଯ୍ୟସିଦ୍ଧି | ୪୯ |
| ୧୫ । ମହାନ୍ ଶିକାରୀ ଆଟାଲଣ୍ଟା | ୫୨ |

| | |
|---|---|
| ୧୬ । ମହାବୀର ହେରେକ୍ଲଜ୍‌ଙ୍କ ଜନ୍ମ | ୫୫ |
| ୧୭ । ନିମିଆର ସିଂହ ଦାନବ ବଧ | ୫୯ |
| ୧୮ । ସୁନା ଆପେଲ ଆଣିବାକୁ ହେରେକ୍ଲଜଙ୍କୁ ଆଦେଶ | ୬୨ |
| ୧୯ । ଟ୍ରୟ ଯୁଦ୍ଧର ମଞ୍ଜି ପୋତା | ୬୫ |
| ୨୦ । ହେଲେନ୍ ହରଣ ଓ ଯୁଦ୍ଧ ପ୍ରସ୍ତୁତ | ୭୦ |
| ୨୧ । ଟ୍ରୟର ପତନ | ୭୬ |
| ୨୨ । ଘର ବାହୁଡ଼ା ଅଡ଼ିସିଅସ୍‌ଙ୍କ ଦୁର୍ଗତି | ୭୯ |




# ଗ୍ରୀସ୍‌ର ଦେବଦେବୀ

ଗୋଟିଏ ଦେଶରେ ପୌରାଣିକ କାହାଣୀମାନଙ୍କରେ ସେ ଦେଶର ଦେବାଦେବୀମାନେ ମୁଖ୍ୟ ସ୍ଥାନ ପାଆନ୍ତି । ତେଣୁ ଗ୍ରୀକ୍ ପୌରାଣିକ କାହାଣୀସବୁ ବୁଝିବା ପାଇଁ ଗ୍ରୀସ୍‌ର ଦେବତାମାନଙ୍କ ସହିତ ପରିଚିତ ହେବା ଆବଶ୍ୟକ ।

ଆମର ଦେବତାମାନେ ସ୍ୱର୍ଗରେ ରହନ୍ତି । ଗ୍ରୀକ୍ ଦେବତାମାନେ ଅଲମ୍ପିଆଠାରେ ଥିବା ଅଲମ୍ପସ୍ ପର୍ବତ ଶୃଙ୍ଗରେ ବାସ କରନ୍ତି । ଅଲମ୍ପସ୍ ପର୍ବତ ଶୃଙ୍ଗ ଗ୍ରୀସ୍‌ର ଉଚ୍ଚତମ ସ୍ଥାନ । ଏହାର ଉଚ୍ଚତା ପ୍ରାୟ ଦଶହଜାର ଫୁଟ । ଦେବରାଜ ଜିଅସ୍, ଦେବରାଣୀ ହେରା ଓ ଦେବତା ପରିବାରର ଅନ୍ୟମାନଙ୍କର ବାସସ୍ଥଳୀ ଅଲମ୍ପସ୍‌ର ସୌନ୍ଦର୍ଯ୍ୟ ଅନୁପମ । ମନୁଷ୍ୟମାନେ ଯେପରି ଦେବତାମାନଙ୍କୁ ଦେଖି ନ ପାରିବେ ସେଥିପାଇଁ ମେଘମାଳ ଅଲମ୍ପସ୍ ପର୍ବତକୁ ଢାଙ୍କି ରଖିଥାଏ । ରାତିର ନିର୍ମଳ ଆକାଶରେ ଯେଉଁ ଛାୟାପଥ ଦିଶେ ତାହା ଦେବତାଙ୍କ ପ୍ରାସାଦକୁ ଲମ୍ବିଥିବା ରାଜପଥ ବୋଲି ଗ୍ରୀକ୍‌ମାନଙ୍କର ବିଶ୍ୱାସ ।

ଅଲମ୍ପସ୍‌ରେ ପ୍ରତ୍ୟେକ ଦେବତାର ଅଲଗା ପ୍ରାସାଦ । ତେବେ ସେମାନେ ପ୍ରତିଦିନ ଏକାଠି ଅମୃତ ମଦଣାଛ୍ବ ଓ ସୁଧାପାନ କରନ୍ତି । ସେତେବେଳେ ମିଉଜ୍‌ମାନେ (ସଙ୍ଗୀତର ଦେବୀଗଣ) ଗୀତ ଗାଆନ୍ତି,

ଆପୋଲୋ ବୀଣାବାଦନ କରନ୍ତି । ସୂର୍ଯ୍ୟାସ୍ତ ପରେ ଦେବତାମାନେ ମନୁଷ୍ୟଙ୍କ ପରି ବିଶ୍ରାମ ନିଅନ୍ତି ।

ଜରୁରୀ ପରିସ୍ଥିତି ଉପୁଜିଲେ ମନ୍ତ୍ରଣା କରିବା ପାଇଁ ଦେବତା-ମାନଙ୍କର ବୈଠକ ବସେ । ଅନ୍ୟ ସମୟରେ ସେମାନେ କରନ୍ତି କ'ଣ ? ସେମାନଙ୍କର ନିର୍ଦ୍ଦିଷ୍ଟ କାର୍ଯ୍ୟ କିଛି ନଥାଏ । ମଉଜ କରିବାର ନୂଆ ନୂଆ ଉପାୟ ଖୋଜିବାରେ ସେମାନଙ୍କର ସମୟ ବିତେ । ଭୋଗ ପାଇବାକୁ ଦେବଗଣଙ୍କର ଖୁବ୍ ଲାଳସା । ଭୋଗ ପାଇଲେ ନ୍ୟାୟ ଅନ୍ୟାୟ ନ ବିଚାରି ସେମାନେ ମଣିଷକୁ ସାହାଯ୍ୟ କରନ୍ତି । ସବୁବେଳେ ମଣିଷଙ୍କ ବ୍ୟାପାରରେ ମୁଣ୍ଡ ପୂରାଇବା ଦେବତାଙ୍କର କାର୍ଯ୍ୟ । ଯୁଦ୍ଧ ଲଗେଇଦେବା ଓ ଯୁଦ୍ଧରେ ଗୋଟିଏ ପକ୍ଷେ ରହି ସକ୍ରିୟ ଭାଗ ନେବାରେ ସେମାନେ ଖୁବ୍ ଆନନ୍ଦ । ଯୁଦ୍ଧ, କଳଗୋଳ ନାହିଁ ତ ମନ ଖୁସିରେ ବଣ ପାହାଡ଼ରେ ବୁଲ; କେଉଁ ଅପସରୀ ସହିତ ମଜାକର ବା କେଉଁ ସୁନ୍ଦରୀ ରାଜକନ୍ୟାର ମନ ଜିଣିବାର ଫନ୍ଦି କର – ଦେବତାଙ୍କ ଜୀବନ ଦର୍ଶନ ମୋଟାମୋଟି ଏହିପରି ।

ଜଣେ ବିଶିଷ୍ଟ ଗ୍ରୀକ୍ ଦାର୍ଶନିକ ଜେନୋଫେନସ୍ ମନ୍ତବ୍ୟ କରିଥିଲେ, ବଳଦମାନେ ଛବି ଆଙ୍କୁଥିଲେ ବା କବିତା ଲେଖୁଥିଲେ ସେମାନେ ଦେବତାଙ୍କୁ ବଳଦଙ୍କ ପରି ରୂପ ଦେଇଥାଆନ୍ତେ । ଗ୍ରୀକ୍ ଦେବଦେବୀଙ୍କୁ ଲକ୍ଷ୍ୟ କଲେ ଏ କଥାଟି କେତେ ସତ ତାହା ହୃଦୟଙ୍ଗମ କରି ହୁଏ । ସେମାନେ ଅନେକାଂଶରେ ମାନବୀୟ । ମଣିଷଙ୍କ ସହିତ ଦେବତା-ଙ୍କର ମେଳ ଥିବାରୁ ଓ ସେମାନେ ମଣିଷଙ୍କ ବ୍ୟାପାରରେ ଜଡ଼ିତ ହେଉଥିବାରୁ ଦେବଗଣଙ୍କର କୀର୍ତ୍ତି ଅପକୀର୍ତ୍ତି ସମ୍ବନ୍ଧୀୟ ଉପାଖ୍ୟାନ-ଗୁଡ଼ିକ ଖୁବ୍ ରସାଳ ଓ ମନମତାଣିଆ । ଗ୍ରୀକ୍ ଦେବତାମାନେ ଅମର ଓ ଅତି ମାନବିକ ଶକ୍ତିର ଅଧିକାରୀ । ଏଇ ଦୁଇଟି ଗୁଣ ନଥିଲେ ସେମାନେ ମଣିଷ ସହିତ ସମାନ ହୋଇଥାନ୍ତେ ।

ଅଲିମ୍ପସ୍‌ର ଦେବଗଣଙ୍କ ମଧ୍ୟରେ ବାରଜଣ ଦେବଦେବୀ ମୁଖ୍ୟ । ସେମାନେ ହେଉଛନ୍ତି ଦେବରାଜ ଜିଅସ୍ ଓ ଦେବରାଣୀ ହେରା;

ଜିଅସ୍‌ଙ୍କର କନ୍ୟା ଏଥେନା, ହ୍ବବ, ଆର୍ଟିମିସ୍ ଓ ଆଫ୍ରୋଡାଇଟ୍; ତାଙ୍କର ପୁତ୍ର ହର୍ମିଜ; ଏରିଜ୍, ଆପୋଲୋ ଓ ହ୍ବିଫାଷ୍ଟସ୍; ଜିଅସ୍‌ଙ୍କ ଭାଇ ପୋସିଡ଼ନ୍ ଓ ଭଗିନୀ ହେଷ୍ଟିଆ । ମୁଖ୍ୟ ଦେବଦେବୀଙ୍କ ମଧ୍ୟରେ ଛଅଜଣ ଦେବତା ଓ ଛଅଜଣ ଦେବୀ । ପୁରୁଷ ଓ ନାରୀଙ୍କର ସମାନ ପ୍ରାଧାନ୍ୟ । ବହୁ ପ୍ରାଚୀନ କାଳରେ ଗ୍ରୀସ୍ ଓ ୟୁରୋପର ଅଧିକାଂଶ ସ୍ଥାନରେ କେବଳ ଦେବୀ ପୂଜା ହେଉଥିଲା । ଖ୍ରୀ.ପୂ ବାରଶହ ବର୍ଷ ବେଳକୁ ଗ୍ରୀସ୍‌ରେ ପ୍ରବେଶ କରିଥିବା ଇଣ୍ଡୋୟୁରୋପୀୟ ଜାତି (ଆର୍ଯ୍ୟ ଜାତି) ଦେବତାମାନଙ୍କୁ ସାଙ୍ଗରେ ଧରି ଆସିଥିଲେ । ଫଳରେ ମାତୃପୂଜାର ଦେଶରେ ଦେବତାଙ୍କର ପୂଜା ଆରମ୍ଭ ହେଲା । ଏହା ସହିତ ଗ୍ରୀସ୍‌ର ନାରୀପ୍ରଧାନ ସମାଜ ବଦଳିଲା । ଅଲିମ୍ପସ୍‌ର ମୁଖ୍ୟ ଦେବଦେବୀଙ୍କ ମଧ୍ୟରେ ଦେବୀ ଓ ଦେବତାଙ୍କର ସଂଖ୍ୟା ସମାନ ହେବା ପ୍ରାଚୀନ ଓ ନବୀନର ଏକ ବାଲାନ୍ସ ବୋଲି କୁହାଯାଇପାରେ । ପରେ ଅଲିମ୍ପସ୍‌କୁ ଜଣେ ନୂଆ ଦେବତା ଡାଇଓନିସସ୍ ଆସିଥିଲେ । ସେ ନବାଗତ ହେଲେ ମଧ୍ୟ ଗ୍ରୀସ୍‌ରେ ପ୍ରାଧାନ୍ୟ ବିସ୍ତାର କଲେ । ଜିଅସ୍‌ଙ୍କର ବାରଜଣିଆ ପରିଷଦରେ ତାଙ୍କୁ ସ୍ଥାନ ଦେବାପାଇଁ ଦେବୀ ହେଷ୍ଟିଅଙ୍କୁ ଆସନ ଛାଡ଼ିଦେବାକୁ ହୋଇଥିଲା ।

ଆମ ଇନ୍ଦ୍ରଙ୍କ ପରି ଜିଅସ୍ ବର୍ଷାର ଦେବତା । ବଜ୍ର ତାଙ୍କର ଆୟୁଧ । ସେ ସର୍ବଶକ୍ତିମାନ ଓ ଦେବତାମାନଙ୍କର ରାଜା । ଅନ୍ୟାୟୀ, ଅତ୍ୟାଚାରୀ ଓ ତାଙ୍କର ବିଧାନକୁ ଅସ୍ୱୀକାର କରୁଥିବା ମଣିଷଙ୍କୁ ସେ ଦଣ୍ଡ ଦିଅନ୍ତି । ଅବଶ୍ୟ ଦେବତାଙ୍କ କାର୍ଯ୍ୟ କଳାପ ପ୍ରତି ଲକ୍ଷ୍ୟ କଲେ ଜିଅସ୍ ସେମାନଙ୍କୁ ନ୍ୟାୟ ପଥରେ ରଖିବାକୁ ଅସମର୍ଥ ଥିଲେ ବୋଲି କେତେ ବିଧାରେ କୁହାଯାଇପାରେ ।

ଭକ୍ତ ସଂଖ୍ୟା ଓ ଲୋକଙ୍କର ପୂଜା ପାଇବା ଦୃଷ୍ଟିରୁ ହେରାଙ୍କ ସମ୍ମାନ ଜିଅସ୍‌ଙ୍କ ଠାରୁ କମ୍ ନଥିଲା । ସେ ଦୁହିଁଙ୍କ ମଧ୍ୟରେ ସମ୍ପର୍କ କିନ୍ତୁ ଆଦୌ ଉତ୍ତମ ନୁହେଁ । ଜିଅସ୍‌ଙ୍କର ଅନେକ ମାନବୀ ଓ ଅପ୍‌ସରୀ ସ୍ତ୍ରୀ ଗ୍ରହଣ ଏହାର କାରଣ । ଜିଅସ୍‌ଙ୍କ ସହିତ ଶକ୍ତିରେ ସମକକ୍ଷ ହୋଇ ନ ଥିବାରୁ ହେରା ତାଙ୍କୁ ଭୟ କରନ୍ତି । ମାତ୍ର ନାନା

ଷଡ଼ଯନ୍ତ୍ର କରି ତାଙ୍କୁ ହଇରାଣ କରୁଥିବାରୁ ଦେବଙ୍କପ୍ରତି ଜିଅସ୍‌ଙ୍କର ଉପ୍ସ କିଛି କମ୍ ନୁହେଁ ।

ଏଥେନାଙ୍କ ପିତା ଜିଅସ୍ ଓ ମାତା ମେଟିସ୍ । ସେ ବିଦ୍ୟାଦାତ୍ରୀ । ଗ୍ରୀସ୍‌ର ଶ୍ରେଷ୍ଠ ନଗରୀ ଏଥେନ୍ସର ଆରାଧ୍ୟାଦେବୀ ହେଉଛନ୍ତି ଏଥେନା । ସେ ସମସ୍ତ ଜ୍ଞାନବିଜ୍ଞାନ ଓ କର୍ମକୁଶଳତା (ରନ୍ଧନ, ସିଲେଇ ଇତ୍ୟାଦି)ର ସୃଷ୍ଟି କାରିଣୀ । ଆପୋଲୋଙ୍କୁ ବାଦ୍ ଦେଲେ ଶୁଦ୍ଧତା, ପବିତ୍ରତା ଓ ଦେବୋପମ ମହତ୍ତ୍ୱ ଗୁଣରେ କୌଣସି ଅଲିମ୍ପସୀୟ ଦେବଦେବୀ ତାଙ୍କ ସହିତ ତୁଳନୀୟ ନୁହନ୍ତି । ଏଥେନା ଯୁଦ୍ଧର ଦେବୀ କିନ୍ତୁ ଯୁଦ୍ଧର ଦେବତା ଏରିଜ୍‌ଙ୍କ ପରି ଯୁଦ୍ଧପ୍ରିୟ ନୁହନ୍ତି । ଥରେ ଯୁଦ୍ଧରେ ପଶିଲେ ସେ ଅଜେୟା ।

ହିବି ଯୌବନର ଦେବୀ । ତାଙ୍କର କୃପା ହେଲେ ବୃଦ୍ଧର ମଧ୍ୟ ଯୌବନ ପ୍ରାପ୍ତି ହୋଇଥାଏ । ଗ୍ରୀସ୍‌ର ମହାବୀର ଓ ଜିଅସ୍‌ଙ୍କର ମାନବପୁତ୍ର ହେରେକ୍ଲିଜ୍ (ବା ହରକିଉଲସ୍) ମଣିଷର ଅଗମ୍ୟ ଅଲିମ୍ପସ୍‌ରେ ଆରୋହଣ କରିଥିଲେ । କଠୋର ପରିଶ୍ରମ କରିବା ଫଳରେ ତାଙ୍କର ସ୍ୱାସ୍ଥ୍ୟଭଙ୍ଗ ହୋଇଥିଲା । ହିବି ତାଙ୍କ ଶରୀରରେ ନୂତନ ଶକ୍ତି ସଞ୍ଚାର କରି ହେରେକ୍ଲିଜ୍‌ଙ୍କ ପୂର୍ବ ସ୍ୱାସ୍ଥ୍ୟ ଫେରାଇ ଆଣିଥିଲେ ।

ଆର୍ଟେମିଜ୍ ବା ଡାଏନା ଚିରକୁମାରୀ । ଶୈଶବରେ ସେ ଚିର କୁମାରୀ ରହିବାପାଇଁ ଜିଅସ୍‌ଙ୍କୁ ବର ମାଗିଥିଲେ । ଧନୁର୍ବିଦ୍ୟାରେ ଡାଏନା ଅତୁଳନୀୟା । ସଖୀମାନଙ୍କ ସହିତ ବଣ ଜଙ୍ଗଲରେ ବୁଲି ଶିକାର କରିବାରେ ଡାଏନାଙ୍କର ଖୁବ୍ ସଉକ । ଗ୍ରୀସ୍‌ର ବଣପାହାଡ଼ ନଥିବା ହେବାରୁ ସେ ଚନ୍ଦ୍ରଲୋକରେ ମଧ୍ୟ ଶିକାର କରନ୍ତି । ଆର୍ଟିମିଜ୍ ଚନ୍ଦ୍ରଲୋକର ଦେବୀ ଭାବେ ପୂଜା ପାଆନ୍ତି । ନାରୀମାନଙ୍କ ଗର୍ଭ ନଷ୍ଟରୁ ଉଦ୍ଧାର କରିବାର କ୍ଷମତା ଆର୍ଟେମିଜ୍‌ଙ୍କର ଅଛି । ପ୍ରସବ ସମୟରେ ନାରୀମାନେ ତାଙ୍କୁ ପ୍ରାର୍ଥନା କରନ୍ତି ।

ଆଫ୍ରୋଡାଇଟ୍ ସୌନ୍ଦର୍ଯ୍ୟର ଦେବୀ । ତାଙ୍କ ରୂପର ବା କି ତୁଳନା ଅଛି ? ସେ ସମୁଦ୍ରରୁ ଜାତ । ଜନ୍ମ କାଳରେ ସୁନ୍ଦରୀ ଜଳପରୀଙ୍କ

ହାଗ ପରିବେଷ୍ଟିତ ହୋଇ ଆଫ୍ରୋଡାଇଟ୍ ସମୁଦ୍ର ଭିତରୁ କୂଳକୁ ଉଠି ଆସିଥିଲେ । ସମୁଦ୍ର କୂଳରୁ ବିଭିନ୍ନ ସ୍ଥାନ ଦେଇ ସେ ଗଲେ ଅଲିମ୍ପସ୍ । ସୌନ୍ଦର୍ଯ୍ୟର ଦେବୀ ଯେଉଁ ବାଟରେ ଯାଆନ୍ତି ସେ ବାଟରେ ଫୁଲ ଫୁଟିଯାଏ । ଆଫ୍ରୋଡାଇଟ୍ ଜିଅସ୍‌ଙ୍କର ପାଳିତା କନ୍ୟା ।

ଜିଅସ୍‌ଙ୍କର ସ୍ବରଜଣ ବରିଷ୍ଠ ପୁତ୍ରଙ୍କ ମଧ୍ୟରୁ ଆପୋଲୋଙ୍କ ପ୍ରତି ସ୍ବତଃ ସମ୍ମାନ ଆସେ । ତାଙ୍କର ମାତାଙ୍କର ନାମ ଲଟୋ । ଆର୍ଟିମିଜ୍ ତାଙ୍କର ଭଗିନୀ । ସମଦର୍ଶୀ ଆପୋଲୋ ସଂଯମର ଦେବତା । ସେ କଳା ଓ ସଙ୍ଗୀତପ୍ରିୟ । ଆପୋଲୋଦେବ ମହାଜ୍ଞାନୀ । ଗ୍ରୀସ୍‌ର ଡେଲ୍‌ଫି ଇଠାରେ ତାଙ୍କର ପ୍ରସିଦ୍ଧ ପୂଜାପୀଠ ଥିଲା । ଦେବତାଙ୍କ କୃପାବଳରେ ଡେଲ୍‌ଫାଇର ପୂଜକ ଭବିଷ୍ୟ କଥା କହି ପାରୁଥିଲେ । ତେଣୁ ପ୍ରଶ୍ନ ପଚାରିବାକୁ ସାରା ଗ୍ରୀସ୍‌ରୁ ଲୋକମାନେ ଡେଲ୍‌ଫାଇ ଆସୁଥିଲେ । ସଙ୍କଟ କାଳରେ ଲୋକେ ଓ ରାଜାମାନେ ଡେଲ୍‌ଫାଇ ପୂଜାପୀଠ ସହିତ ପରାମର୍ଶ ନ କରି କୌଣସି ସିଦ୍ଧାନ୍ତ ନେଉ ନ ଥିଲେ ।

ଏରିଜ୍ ଯୁଦ୍ଧର ଦେବତା । ଯୁଦ୍ଧ ଦେଖିବାରେ ଓ ଯୁଦ୍ଧରେ ଭାଗ ନେବାରେ ତାଙ୍କର ବଡ଼ ଆନନ୍ଦ । ଏରିଜ୍‌ଙ୍କର ଏହି ଗୁଣ ଯୋଗୁ ଜଣଙ୍କ ବ୍ୟତୀତ ଅଲିମ୍ପସ୍‌ର କୌଣସି ଦେବୀ ତାଙ୍କୁ ଭଲ ପାଆନ୍ତି ନାହିଁ । ଏହି ହେଉଛନ୍ତି ଏରିଜ୍‌ଙ୍କ ଭଉଣୀ ଇରିଜ୍ । ଇରିଜ୍ ଅତ୍ୟନ୍ତ କଳହପ୍ରିୟା । ଖଟମିଛ କହି ଯୁଦ୍ଧ ଲଗାଇଦେବାରେ ସେ ସିଦ୍ଧହସ୍ତା । ତାଙ୍କର ଏହି ଗୁଣ ଯୋଗୁ ଭାଇଭଉଣୀଙ୍କ ମଧ୍ୟରେ ଖୁବ୍ ଭଲ ସମ୍ପର୍କ ।

ହେରାଙ୍କ ପୁତ୍ର ହିଫେଷ୍ଟାସ୍ ଅଲିମ୍ପସ୍‌ର ସର୍ବଶ୍ରେଷ୍ଠ ପ୍ରତିଭା । ମାତ୍ର ବିଧିର ଏପରି ବିଧାନ ଯେ ସେ ଖଞ୍ଜ ଓ କଦାକାର । ହିଫେଷ୍ଟାସ୍ ଶିଳ୍ପସ୍ରଷ୍ଟା ଓ କାରିଗରୀ ବିଦ୍ୟାର ଦେବତା । ତାଙ୍କର ଉଦ୍ଭାବନ ପ୍ରତିଭାର ତୁଳନା ନାହିଁ । ବଡ଼ ବୈଜ୍ଞାନିକଙ୍କ ପରି ହିଫେଷ୍ଟାସ୍ ଆଡ଼ଭୋଳିଆ । ତାଙ୍କର କାର୍ଯ୍ୟକଳାପ ଅଲିମ୍ପସ୍‌ର ଦେବତାଙ୍କୁ ପ୍ରଚୁର ଆମୋଦ ଯୋଗାଏ । ସୌନ୍ଦର୍ଯ୍ୟର ଦେବୀ ଆଫ୍ରୋଡାଇଟି ଶ୍ରେଷ୍ଠା ଓ

ଅସୁନ୍ଦର ହ୍ୱେଫେଷ୍ଟାସ୍‌ଙ୍କୁ ସ୍ୱାମୀରୂପେ ବାଛିବା ଦେବତାଙ୍କ ମାୟାର ଏକ ଦୃଷ୍ଟାନ୍ତ । ଆଫ୍ରୋଡ଼ାଇଟ୍ ଅବଶ୍ୟ ଗୋଟିଏ ଅତି ସୁନ୍ଦର ଉପହାର ଦେଇଥିବାରୁ ହେରା ତାଙ୍କୁ ଆଫ୍ରୋଡ଼ାଇଟ୍‌ଙ୍କୁ ପାଇବାରେ ସାହାଯ୍ୟ କରିବାକୁ ପ୍ରତିଶ୍ରୁତି ଦେଇଥିଲେ । ଆଫ୍ରୋଡ଼ାଇଟ୍ ଜାଣିଥିଲେ ଯେ ତାଙ୍କର ଦୋଷତ୍ରୁଟି ଆଡ଼ବାଇସ୍ତା ସ୍ୱାମୀଙ୍କ ଦୃଷ୍ଟିରେ ପଡ଼ିବ ନାହିଁ । ତେଣୁ ହ୍ୱେଫେଷ୍ଟାସ୍‌ଙ୍କୁ ବିବାହ କରିବାକୁ ରାଜି ହୋଇଗଲେ ।

ଅଲିମ୍ପସ୍‌ର ଆଉ ଜଣେ ଆକର୍ଷଣୀୟ ଦେବତା ହେଉଛନ୍ତି ହର୍ମିଜ୍ । ସେ ଅତ୍ୟନ୍ତ ଧୂର୍ତ୍ତ । କଥା ଗୁଡୁଗାଡ଼ିରେ ଜିଅସ୍‌ଙ୍କ ମନ ମୋହି ସେ ତାଙ୍କ ଦ୍ୱାରା ଦେବଦୂତ ପଦରେ ନିଯୁକ୍ତ ହୋଇଥିଲେ । ଦେବତାଙ୍କର ବାର୍ତ୍ତାବହ ଭାବେ ତାଙ୍କୁ ଯଥେଷ୍ଟ କ୍ଷମତା ଓ ସାଜପୋଷାକ ମିଳିଥିଲା । ସୁବର୍ଣ୍ଣ ପାଦୁକା ପିନ୍ଧି ସେ ନିମିଷକେ ଯେ କୌଣସି ସ୍ଥାନକୁ ଇଚ୍ଛାକଲେ ଉଡ଼ିଯାଇ ପାରନ୍ତି । ଚୋରି ବିଦ୍ୟାରେ ହର୍ମିଜ୍ ଅତି ଦକ୍ଷ । ବାଲ୍ୟକାଳରେ ସେ ଆପୋଲୋଙ୍କର ଗାଈଗୋଠ ଚୋରି କରି ନେଇ-ଥିଲେ । ପରେ ଧରାପଡ଼ି ବାକ୍‌ଚାତୁରୀ ଓ ମଧୁର ବଂଶୀବାଦନରେ ଆପୋଲୋଙ୍କୁ ମୁଗ୍‌ଧ କରି ଅନେକ ମୂଲ୍ୟବାନ ଉପହାର ହାସଲ କଲେ । ଚୋରମାନେ ହର୍ମିଜ୍ ଦେବଙ୍କୁ ପୂଜା କରନ୍ତି । ତାଙ୍କ କୃପାରୁ ସେମାନଙ୍କ କାର୍ଯ୍ୟ ସୁରୁଖୁରୁରେ ସମ୍ପନ୍ନ ହୁଏ । ଦେଣନେଣ ବ୍ୟାପାରରେ ଫାଇଦା ଉଠାଇବାରେ ହର୍ମିଜ୍ ଅପ୍ରତିଦ୍ୱନ୍ଦ୍ୱୀ । ତେଣୁ ସେ ବଣିକମାନଙ୍କର ଦେବତା । ଜୁଆଡ଼ିମାନେ ମଧ୍ୟ ତାଙ୍କୁ ଲାଞ୍ଚ ଦେଇ ପ୍ରାର୍ଥନା କରନ୍ତି । ହର୍ମିଜ୍ ବାଗ୍ମୀତା କଳାର ଦେବତା । ଲୋକଙ୍କୁ ପ୍ରବର୍ତ୍ତାଇ ପାରିବାର ବାକ୍‌ଶକ୍ତି ହାସଲ ପାଇଁ ବକ୍ତାମାନେ ତାଙ୍କୁ ପୂଜା କରନ୍ତି । ମୋଟ ଉପରେ ହର୍ମିଜ୍‌ଙ୍କର ପ୍ରତିଭା ଯେପରି ବହୁମୁଖୀ, ବ୍ୟକ୍ତିତ୍ୱ ଓ କାର୍ଯ୍ୟକଳାପ ସେହିପରି ଚିତ୍ତାକର୍ଷକ ।

ଜିଅସ୍‌ଙ୍କ ଭାଇ ପୋସିଡ଼ନ୍ ସାଗରର ଦେବତା । ସେ ଅଲିମ୍ପସ୍‌ର ଦେବତା ରୂପେ ଗଣ୍ୟ ହେଉଥିଲେ ମଧ୍ୟ ଅଧିକାଂଶ ସମୟ ସମୁଦ୍ରରେ ଥାଆନ୍ତି । ଜିଅସ୍‌ଙ୍କର ଆଉଜଣେ ଭାଇ ହେଡ଼ିଜ୍ ମୃତ୍ୟୁର ଦେବତା । ସେ ପାତାଳ ପୁରର ମାଲିକ । ହେଡ଼ିଜ୍ କିନ୍ତୁ ଅଲିମ୍ପସୀୟ

ଦେବତା ମୂର୍ତ୍ତି । ଜିଅସ୍, ପୋସିଡ଼ନ୍ ଓ ହେଡ଼ଜ୍ ଆକାଶ, ସମୁଦ୍ର ଓ ପାତାଳର ଅଧୀଶ୍ୱର । ପୃଥିବୀ ଏ ତିନିଜଣଙ୍କର କୋଠ ସମ୍ପତ୍ତି ।

ଜିଅସ୍‌ଙ୍କ ଭଉଣୀ ହେଷ୍ଟିଆ ଅତ୍ୟନ୍ତ ଭଦ୍ର ଓ ଦୟାଳୁ । ପରିବାରର ମଙ୍ଗଳ ତାଙ୍କର କୃପା ଉପରେ ନିର୍ଭର କରେ । ଘରେ ଖାଇବା ପୂର୍ବରୁ ଗ୍ରୀକ୍‌ମାନେ ହେଷ୍ଟିଆଙ୍କ ପାଖରେ ଭୋଗ ଲଗାନ୍ତି । ଯଜ୍ଞ ଓ ପୂଜାରେ ପ୍ରଥମେ ହେଷ୍ଟିଆଙ୍କୁ ଭୋଗ ଦିଆଯାଏ ।

ଡାଇଓନିସସ୍ ଜିଅସ୍‌ଙ୍କର ପୁତ୍ର । ତାଙ୍କର ମା କିଏ ସେ ବିଷୟରେ ମତଭେଦ ରହିଛି । ତେବେ ହେରା ତାଙ୍କର ମାଆ ନୁହନ୍ତି । ଜିଅସ୍ ଡାଇଓନିସସ୍‌ଙ୍କୁ ଖୁବ୍ ନେହ କରୁଥିବାରୁ ହେରା ତାଙ୍କୁ ପାଗଳ କରି ଦେଇଥିଲେ । ଡାଇଓନିସସ୍ ସବୁ ପ୍ରକାର ଉନ୍ମାଦତାର ଚାର ଦେବତା । ତାଙ୍କର ଭକ୍ତମାନେ ମଦ ପିଇ ମାତାଲ ଅବସ୍ଥାରେ ତାଙ୍କୁ ପୂଜା କରନ୍ତି । କିନ୍ତୁ ଡାଇଓନିସସ୍‌ଙ୍କୁ କେବଳ ମଦ୍ୟର ଦେବତା ମନେକରିବା ଭୁଲ୍ । ଡାଇଓନିସସ୍‌ଙ୍କ କୃପା ହେଲେ ନୈସର୍ଗିକ ଉନ୍ମାଦତା ବଳରେ କବି, କଳାକାରମାନେ ସେମାନଙ୍କର ମହାନ୍ ସୃଷ୍ଟି କରିପାରନ୍ତି ।

ଅଲିମ୍ପସ୍‌ର ମୁଖ୍ୟ ଦେବତାଙ୍କ ସଂଖ୍ୟା ବାର କିନ୍ତୁ ସମୁଦାୟ ଦେବତାଙ୍କ ସଂଖ୍ୟା ଅଗଣିତ । ଗ୍ରୀକ୍ ମାନସ ପ୍ରତ୍ୟେକ ଗୁଣ, ପ୍ରତ୍ୟେକ କଳା, କୌଶଳ, ଦକ୍ଷତା, ଏପରିକି ଋତୁ, ମାସ, ଦିନ, ଘଣ୍ଟା ଓ ପ୍ରହର ମୂଳରେ ଜଣେ ଜଣେ ଦେବତା କଳ୍ପନା କରିଥିଲା । ଜିଅସ୍‌ଙ୍କର ବହୁ ସ୍ତ୍ରୀ ଗ୍ରହଣ ଯୋଗୁ ଦେବତାମାନଙ୍କର ପରିବାର ନିୟନ୍ତ୍ରଣ ହୋଇପାରିନାହିଁ । ଜିଅସ୍‌ଙ୍କର ଥିମିଜ୍ ନାମକ ସ୍ତ୍ରୀ ଗର୍ଭରୁ ବାରୋଟି ସନ୍ତାନ ଜନ୍ମ ହୋଇଥିଲେ । ସେମାନେ ହୋରାଇନ୍ତି ଦିନର ବାରଘଣ୍ଟା ୟୁରୋନୋମ ନାମକ ଆଉ ଜଣେ ସ୍ତ୍ରୀ ତାଙ୍କୁ ତିନୋଟି କନ୍ୟା ଉପହାର ଦେଇଥିଲେ । ସେମାନେ ଗ୍ରେସ୍ (Grace) ଭଗିନୀ ଭାବେ ଖ୍ୟାତ । ନିମୋସିନ୍‌ଙ୍କ ଗର୍ଭରୁ ଜିଅସ୍‌ଙ୍କର ନଅଟି କନ୍ୟା ହୋଇଥିଲେ ।

ସେମାନେ ମ୍ୟୁଜେସ୍ ଦେବୀ ଭାବେ ପୂଜା ପାଆନ୍ତି । ମ୍ୟୁଜେସ୍ ଭଗିନୀଗଣ କଳା, କବିତା ଓ ସଙ୍ଗୀତର ଦେବୀ ।

ଅଲମ୍ପସ୍‌ର ଦେବଗଣଙ୍କ ଆବିର୍ଭାବ ପୂର୍ବରୁ ଗ୍ରୀସ୍‌ରେ ସହସ୍ରାଧିକ ପ୍ରାଚୀନ ଦେବଦେବୀ ଥିଲେ । ଅବଶ୍ୟ ଅଲମ୍ପସୀୟଙ୍କର ଆଗମନ ପରେ ସେମାନଙ୍କର ଗୁରୁତ୍ୱ କମି ଯାଇଥିଲା । କେତେକେତେଜଣ ଅଲମ୍ପସ୍‌ର ଦେବତା ପରିବାରରେ ମିଶି ଯାଇଥିଲେ । ପ୍ରାକ୍-ଅଲମ୍ପସୀୟଙ୍କ ମଧ୍ୟରେ ପାନ୍, ଡିମିଟର୍‌ଙ୍କ ପରି କେତେକ ବରିଷ୍ଠ ଦେବଦେବୀ ଅଛନ୍ତି । ଦେବୀ ଡିମିଟର୍ ହେଉଛନ୍ତି ଫସଲ ଅମଳର । ଡିମିଟର୍‌ଙ୍କର କନ୍ୟା ପର୍ସିଫୋନ୍‌ଙ୍କୁ ଯମରାଜା ହେଡ଼ିଜ୍‌ଙ୍କ ସ୍ତ୍ରୀ । ଗୋଟିଏ କାହାଣି ଅନୁସରେ ହେଡ଼ିଜ୍ ପର୍ସିଫୋନ୍‌ଙ୍କୁ ହରଣ କରିନେଇଥିଲେ । ଡିମିଟର୍ କନ୍ୟାକୁ ବିକଳ ହୋଇ ଖୋଜୁଥିବା ବେଳେ ଇଲୁସିସ୍ ନଗରବାସୀ ତାଙ୍କୁ ପୂଜା କରିଥିଲେ । ସେମାନଙ୍କ ଉପରେ ସନ୍ତୁଷ୍ଟ ହୋଇ ଦେବୀ ସେମାନଙ୍କୁ କୃଷିବିଦ୍ୟା ଶିଖାଇଥିଲେ । ପର୍ସିଫୋନଙ୍କୁ ଠାବ କଲା ପରେ ଝିଅକୁ ଫେରାଇ ନେବାକୁ ଡିମିଟର୍ ଜିଦ୍ କରିଥିଲେ । ଜିଅସ୍‌ଙ୍କ ମଧ୍ୟସ୍ଥତା ଫଳରେ ସ୍ଥିର ହେଲା ଯେ ପର୍ସିଫୋନ୍ ବର୍ଷକୁ ନଅ ମାସ ମର୍ତ୍ତ୍ୟରେ ରହିବେ ଓ ତିନମାସ ପାତାଳକୁ ଯିବେ । ବର୍ଷରେ ନଅମାସ ଶସ୍ୟ କ୍ଷେତ ହସୁଥାଏ । ଓ ତିନମାସ ପଡ଼ିଆ ପଡ଼େ ।

ପ୍ରକୃତିର ଶୋଭା ଦେଖି ସଦା ପ୍ରସନ୍ନ ପାନ୍ ବଣଜଙ୍ଗଲରେ ବୁଲୁଥାଆନ୍ତି । ବଂଶୀବାଦନ ତାଙ୍କର ଅତି ପ୍ରିୟ । ଘୋର ଅରଣ୍ୟରେ ମେଷ ପାଳକମାନେ ତାଙ୍କର ବଂଶୀଧ୍ୱନି ଶୁଣି ଚମକ ପଡନ୍ତି । ଇଂରାଜୀ ପାନିକ୍ (Panic) ଶବ୍ଦଟି ପାନରୁ ସୃଷ୍ଟି । ପାନ୍‌ଙ୍କର ଅର୍ଦ୍ଧାଂଶ ଛାଗଳର ଓ ଅର୍ଦ୍ଧାଂଶ ମନୁଷ୍ୟର । ତାଙ୍କର ଦୁଇଟି ସିଙ୍ଘ, ଛେଳି ମୁଣ୍ଡ, ଛେଳି ଦାଢ଼ି ଓ ଛେଳି ଖୁରା ପରି ପାଦ । ସାଟୀର୍‌ମାନେ (ଅର୍ଦ୍ଧାଙ୍ଗ ଛାଗଳ, ଅର୍ଦ୍ଧାଙ୍ଗ ମନୁଷ୍ୟ) ତାଙ୍କର ଅନୁଚର । ବଣ ପଶୁଙ୍କ ସହିତ ଖେଳିବା, ବୁଲିବା ଓ ନୃତ୍ୟ କରିବାରେ ତାଙ୍କର ସମୟ ବିତେ ।

ଅଗଣିତ ଦେବଦେବୀ ନିର୍ମାଣିଲ ପର ଗ୍ରୀକ୍ ଜାତି ଅସଂଖ୍ୟ ଅପ୍ସରୀ, ବଣପରୀ ଓ ଜଳପରୀଙ୍କର କଳ୍ପନା କରିଥିଲେ। ଗ୍ରୀସ୍‌ର ନଦନଦୀ, ବଣ ପାହାଡ଼ ଓ ପ୍ରତ୍ୟେକ ଶୋଭାବନ୍ତ ସ୍ଥାନରେ ଦେବୀ, ବଣପରୀ, ଜଳ ଦେବତା ବା ଜଳପରୀମାନେ ଆସ୍ଥାନ ଜମେଇଥିଲେ। ଆଜି ସେମାନଙ୍କୁ କେନ୍ଦ୍ର କରି ଯେତେ କାହାଣୀ ସୃଷ୍ଟି ହୋଇଥିଲା ଭାବିଲେ ଆମେ ବିସ୍ମିତ ହେଉ।

ଏ ବହିରେ ଗ୍ରୀସ୍‌ର କେତୋଟି ପ୍ରସିଦ୍ଧ ପୌରାଣିକ କାହାଣୀ କହିବା ଆମର ଉଦ୍ଦେଶ୍ୟ।



# କ୍ରିଟ୍ ଦ୍ୱୀପର ଷଣ୍ଢାସୁର

ମାନବ ଜାତିର ଇତିହାସରେ ପ୍ରାଚୀନ ଗ୍ରୀସ୍‌ର ସଭ୍ୟତା ଅତୁଳନୀୟ । ଖ୍ରୀଷ୍ଟପୂର୍ବ ପାଞ୍ଚଶହ ବର୍ଷ ବେଳକୁ ଗ୍ରୀକ୍ ସଭ୍ୟତାର ଚରମ ବିକାଶ ଘଟିଥିଲା । ଗ୍ରୀସ୍‌ଠାରୁ କିଛି ଦୂରରେ କ୍ରିଟ୍ ନାମକ ଗୋଟିଏ ଦ୍ୱୀପ ଅଛି । ଖ୍ରୀଷ୍ଟପୂର୍ବ ଦୁଇ ହଜାର ବର୍ଷ ତଳେ କ୍ରିଟ୍‌ରେ ଏକ ଉନ୍ନତ ସଭ୍ୟତା ଗଢ଼ି ଉଠିଥିଲା । ଏହି କାହାଣୀଟି ସେଇ କ୍ରିଟ୍ ଦେଶ ସମ୍ପର୍କୀୟ ।

କ୍ରିଟ୍‌ବାସୀ ବୃଷଭ ଦେବତାଙ୍କୁ ପୂଜା କରୁଥିଲେ । ବୃଷଭ ଦେବତାଙ୍କର ଗୋଟିଏ ଭୟଙ୍କର ପୁତ୍ର ଥିଲା । ସେ ମିନାଟୋର୍‌ଙ୍କ ନାମରେ ଖ୍ୟାତ । ମିନାଟୋର୍‌ଙ୍କ ଶରୀର ମଣିଷର ଶରୀର ପରି କିନ୍ତୁ ମୁଣ୍ଡଟି ବିଶାଳ ବୃଷଭର ମୁଣ୍ଡ । ସେ ଯେମିତି ହିଂସ୍ର, ସେହିପରି ବଳୀୟାନ୍ । ତେଣୁ ବୃଷଭ ଦେବଙ୍କ ପୁତ୍ର ହେଲେ ମଧ୍ୟ ମିନାଟୋର୍ ଗୋଟିଏ ଅସୁର । ତାଙ୍କୁ ଷଣ୍ଢାସୁର କହିବା ଭୁଲ ହେବନାହିଁ ।

କ୍ରିଟ୍‌ର ରଜା ମିନାଟୋର୍‌କୁ ଗୋଟିଏ ବିରାଟ ଅଟ୍ଟାଳିକାରେ ବନ୍ଦୀ କରି ରଖିଥିଲେ । ତାହା ବଡ଼ ଅଦ୍ଭୁତ କୋଠା । ସେ କୋଠା ଏପରି କୌଶଳରେ ନିର୍ମିତ ଯେ ଥରେ ତା ଭିତରକୁ ପଶିଲେ ବାଟ ଖୋଜି ଖୋଜି ନିସ୍ତାନ୍ତ ହେବା ସାର ହୁଏ । ଯିବାଲୋକ କିନ୍ତୁ ଆଉ ଫେରି ପାରେ ନାହିଁ । କେଉଁ କୋଣରେ ତା ଭିତରେ ମରେ ବା

ମିନାଟୋର୍ ମୁହଁରେ ଯାଏ ଏହି ଅଦ୍ଭୁତ କୋଠାର ନାମ ଲ୍ୟାବ୍‌ରିନ୍ଥ ।
କ୍ରିଟ୍‌ର ବିଚକ୍ଷଣ ଇଂଜିନିୟର୍ ଡ଼େଡାଲସ୍ ଏହାକୁ ନିର୍ମାଣ କରିଥିଲେ ।

ମିନାଟୋର୍‌ର ଖାଦ୍ୟ ହେବାପାଇଁ ପ୍ରତି ନଅବର୍ଷରେ ଗ୍ରୀସ୍‌ର ଏଥେନ୍‌ସ ନଗରରୁ ସାତଜଣ ଯୁବକ ଓ ସାତଜଣ ଯୁବତୀ ପଠା-ଯାଆନ୍ତି । ଥରେ କ୍ରିଟ୍ ଦ୍ୱାରା ପରାସ୍ତ ହେବା ପରେ ଏଥେନ୍‌ସ ବାଧ୍ୟ ହୋଇ ଏହିପରି ଚୁକ୍ତି କରିଥିଲା । ନଅ ବର୍ଷରେ ଥରେ ମିନାଟୋର୍ ନରବଳି ପାଏ । ଏଥେନ୍‌ସରୁ ଆସିଥିବା ଚଉଦଜଣ ଯୁବକ ଯୁବତୀଙ୍କୁ ଲ୍ୟାବ୍‌ରିନ୍ଥ ଭିତରକୁ ଠେଲି ଦିଆଯାଏ । ସେଇ ବିଚିତ୍ର କୋଠା ଭିତରେ ବୁଲି ବୁଲି ସେମାନେ ବାହାରିବାର ବାଟ ପାଆନ୍ତି ନାହିଁ । ଅନେକ ଘୂରିଲା ପରେ ଜଣେ ଆବିଷ୍କାର କରେ, ସେ ଯେଉଁଠି ଥିଲା ସେଇଠି ଆସି ପହଞ୍ଚିଛି । ବିକଳ ହୋଇ ବାଟ ଖୋଜି ଖୋଜି ଏହି ହତଭାଗ୍ୟମାନେ ଗୋଟି ଗୋଟି ହୋଇ ମିନାଟୋର୍ ହାବୁଡ଼ରେ ପଡନ୍ତି ଓ ତାର ଖାଦ୍ୟ ହୁଅନ୍ତି ।

ମିନାଟୋର୍‌ର ଖାଦ୍ୟ ହେବାକୁ ଯାଉଥିବା ଯୁବକ ଯୁବତୀଙ୍କୁ ଏଥେନ୍‌ସବାସୀ କାନ୍ଦି କାନ୍ଦି ବିଦାୟ ଦିଅନ୍ତି । ଗୋଟିଏ କଳା ଜାହାଜ କଳାରଙ୍ଗର ପାଲ ଭିଡ଼ି ଏମାନଙ୍କୁ କ୍ରିଟ୍ ନେଇଯାଏ । ନଅ ବର୍ଷରେ ଥରେ ଏହି ହୃଦୟ ବିଦାରକ ଘଟଣାର ପୁନରାବୃତ୍ତି ହୁଏ । ଏଥେନ୍‌ସ-ବାସୀ କିପରି ଏ ଅପମାନ ଓ ଅତ୍ୟାଚାରରୁ ରକ୍ଷାପାଇବେ ସେ ବିଷୟରେ ସର୍ବଦା ଚିନ୍ତିତ ଥାଆନ୍ତି । କେତେକାଳ ବିତିଯିବା ପରେ ଏଥେନ୍‌ସର ଜଣେ ବୀର ପୁରୁଷ ବାହାରିଲେ । ସେ ହେଉଛନ୍ତି ନଗରର ରାଜା ଇଜିଅସ୍‌ଙ୍କର ପୁତ୍ର ଥିସିଅସ୍ ସେ ଏଥେନ୍‌ସକୁ ମିନାଟୋର୍ ଆତଙ୍କରୁ ରକ୍ଷା କରିଥିଲେ ।

ଟ୍ରୋଇଜନ୍‌ର ସୁନ୍ଦରୀ ରାଜକନ୍ୟା ଥିସିଅସ୍‌ଙ୍କ ମାଆ । ଥିସିଅସ୍ ମାଆଙ୍କ ରାଜ୍ୟରେ ଜନ୍ମ ହୋଇ ସେଇଠି ବଢ଼ିଥିଲେ । ବଡ଼ ହୋଇ-ଯିବା ପରେ ଯୁବକ ଥିସିଅସ୍ ବାପାଙ୍କୁ ଭେଟିବାକୁ ଏଥେନ୍‌ସ

ଯାତ୍ରାକଲେ । ବାଟରେ ବହୁ ଦୁଷ୍ଟ ଦାନବ ଓ ଅତ୍ୟାଚାରୀ ଡକାୟତଙ୍କୁ ବଧ କରି ସେ ପିତାଙ୍କ ରାଜ୍ୟରେ ପହଞ୍ଚିଲେ । ପିତାପୁତ୍ରଙ୍କର ମଧୁର ମିଳନଦିନ ଏଥେନ୍ସକୁ ବିଷାଦର ଛାୟା ଘୋଟି ଯାଇଥାଏ । କାରଣ ମିନୋଟୋର୍‌ର ଆହାର ହେବାକୁ ଚଉଦଜଣ ଯୁବକ ଯୁବତୀ ସେଦିନ କ୍ରିଟ୍ ଯାତ୍ରା କରୁଥାନ୍ତି । ସବୁକଥା ଶୁଣି ମିନୋଟୋର୍‌କୁ ବଧ କରିବାକୁ ଥିସିଅସ୍ ପ୍ରତିଜ୍ଞା କଲେ । ପିତାଙ୍କ ବାରଣ ନ ମାନି ଚଉଦଜଣ ଯୁବକଯୁବତୀଙ୍କ ମଧ୍ୟରୁ ଜଣେ ହୋଇ ସେ ବାହାରିଲେ । ଯିବା ସମୟରେ ଶୋକାକୁଳ ପିତାଙ୍କୁ ଆଶ୍ୱାସନା ଦେଇ କହିଲେ ଯେ ଫେରିବା ବେଳକୁ ଦୁଃଖଶୋକର ସଙ୍କେତ କଳାରଙ୍ଗର ପାଲ ସ୍ଥାନରେ ଧଳା ପାଲ ଟଣା ଯାଇଥିବ । ସେ ନିଶ୍ଚୟ ମିନୋଟୋର୍‌କୁ ମାରିକରି ଫେରିବେ । କ୍ରିଟ୍‌ରେ ପହଞ୍ଚିବା ପରେ ଘଟଣାଚକ୍ରରେ କ୍ରିଟ୍ ରାଜଜେମାଙ୍କ ସହିତ ଥିସିଅସ୍‌ଙ୍କର ପରିଚୟ ହୋଇଥିଲା । ଥିସିଅସ୍‌ଙ୍କ ରୂପଗୁଣରେ ରାଜଜେମା ମୁଗ୍ଧ ହୋଇଥିଲେ । ଏଡ଼େ ସୁନ୍ଦର ରାଜକୁମାର ସାକ୍ଷାତ ମୃତ୍ୟୁ ମୁହଁକୁ ଯାଉଥିବା କଥା ସେ ସହିପାରିଲେ ନାହିଁ । ତାଙ୍କୁ କ୍ରିଟ୍ ଛାଡ଼ି ପଳାଇବାକୁ ରାଜଜେମା ଅନୁରୋଧ କଲେ । ମାତ୍ର ଥିସିଅସ୍ ନିଜ ସିଦ୍ଧାନ୍ତରେ ଅଟଳ ଦେଖି ଜେମା ଗୋଟିଏ ଉପାୟ ବତାଇଲେ । ଥିସିଅସ୍‌ଙ୍କୁ ଗୋଟିଏ ସୂତାଗୁଳି ଦେଇ କହିଲେ, ଲ୍ୟାବ୍‌ରେନ୍ଥ ଭିତରକୁ ପଶିବାବେଳେ ଥିସିଅସ୍ ଦୁଆରବନ୍ଧରେ ସୂତାଗୁଳିର ଅଗ ବାନ୍ଧିଦେବେ । ଫଳରେ ଯେତେ ଯେ ଆଡ଼େ ବୁଲିଲେ ମଧ୍ୟ ତାଙ୍କ ସହିତ ରହିଥିବା ସୂତାରୁ ଚିହ୍ନଟ କରି ସେ ଦୁଆରମୁହଁ ପାଖକୁ ଫେରି ଆସି-ପାରିବେ । ତା ଛଡ଼ା ମିନୋଟୋର୍ ଯେଉଁ ଖଣ୍ଡାରେ ମରିବ, ସେହି ଖଣ୍ଡାଟି ଥିସିଅସ୍‌ଙ୍କୁ ଜେମା ଦେଇଥିଲେ ।

ବୁଦ୍ଧିମତୀ ରାଜକନ୍ୟାଙ୍କ ସାହାଯ୍ୟ ପାଇ ଥିସିଅସ୍ ସେହି ଭୟଙ୍କର ଦୈତ୍ୟାସୁରକୁ ବଧ କଲେ ଓ ସାଥୀମାନଙ୍କୁ ଧରି ଗୋଲକଧନ୍ଦାରୁ ବାହାରି ଆସିଲେ । ସେଇ ରାତିରେ ସେମାନେ କ୍ରିଟ୍ ଛାଡ଼ିଲେ । ରାକ୍ଷସ ମରିଥିବାରୁ ସମସ୍ତଙ୍କ ଆନନ୍ଦ କହିଲେ ନ ସରେ । ଏତେ ଖୁସି ଆନନ୍ଦ

ଭିତରେ ଜାହାଜର କଳା ପାଲ ବଦଳାଇବାକୁ କାହାର ମନେ ପଡ଼ିଲା ନାହିଁ ।

ପୁଅର ଫେରିବା ବାଟକୁ ଇଜିଅସ୍ ଉତ୍କଣ୍ଠିତ ଭାବେ ଅପେକ୍ଷା କରିଥାନ୍ତି । ଦିଗବଳୟରେ ଏଥେନ୍ସର ଜାହାଜ ଫେରୁଥିବାର ଦେଖାଗଲା । ଲୋକମାନେ ବ୍ୟଗ୍ରହୋଇ ଗୁହିଁଲେ । ସତେ କ'ଣ ରାଜକୁମାର ରାକ୍ଷସକୁ ମାରି ନଗରର ସମ୍ମାନ ଫେରାଇ ଆଣିଛନ୍ତି ? ମାତ୍ର ହାୟ ! ଜାହାଜ ଟିକିଏ ପାଖେଇ ଆସିବାରୁ କଳାପାଲ ଦେଖାଗଲା । ସମୁଦ୍ର ଭିତରେ ଗୋଟିଏ ଜାହାଜରେ ଦିନଦିନ ଧରି ପୁଅକୁ ଅପେକ୍ଷା କରିଥିବା ରାଜା କଳା ପାଲକୁ ଦେଖିଦେଇ ଦୁଃଖରେ ଭାଙ୍ଗିପଡ଼ିଲେ । ପୁଅ ତେବେ ତାଙ୍କର ଆଉ ନାହିଁ ! କାହାକୁ କିଛି ନ କହି ସେ ସମୁଦ୍ର ଭିତରକୁ ଡେଇଁ ପଡ଼ିଲେ । ସେହିଦିନୁ ରାଜା ଇଜିଅସ୍ଙ୍କ ନାମାନୁସାରେ ସମୁଦ୍ରର ନାମ ରହିଛି ଇଜିଆନ୍ ସାଗର ।

ଜାହଜ କୂଳରେ ଲାଗିଲାମାତ୍ରେ ଥିସିଅସ୍ ଓ ତାଙ୍କର ସଙ୍ଗୀଗଣ ମହା ଆନନ୍ଦରେ ନଗରବାସୀଙ୍କୁ ଭେଟିବାକୁ ଧାଇଁଲେ । ସେମାନଙ୍କୁ ଦେଖି ଉତ୍ସବ ନକରି ସମସ୍ତେ କାନ୍ଦୁଛନ୍ତି କାହିଁକି ? ଅଳ୍ପ ସମୟ ପୂର୍ବର ଭୟଙ୍କର ଘଟଣାଟି ଶୁଣିଦେଇ ଥିସିଅସ୍ ଖୁବ୍ ବିଳାପ କଲେ ।

ବିଶୃଙ୍ଖଳା ଓ ଖଣ୍ଡବିଖଣ୍ଡିତ ଅଞ୍ଚଳ ଗୁଡ଼ିକୁ ଏକାଠି କରି ଥିସିଅସ୍ ଏଥେନ୍ସ ନଗରବିଷ୍ଟ୍ର ପ୍ରତିଷ୍ଠା କଲେ । ସେ ଗ୍ରୀସ୍ର ଜଣେ ଜଣେ ବୀରପୁରୁଷ । ତାଙ୍କର ରାଜତ୍ଵ କାଳରେ ଏଥେନ୍ସର ଅନେକ ଉନ୍ନତି ସାଧିତ ହୋଇଥିଲା ।



# ପ୍ରଥମ ଉଡ଼ନ୍ତା ମଣିଷ ଡେଡ଼ାଲସ୍

ଡେଡ଼ାଲସଙ୍କୁ ପ୍ରାଚୀନ ଗ୍ରୀସ୍‌ର ବିଶ୍ୱକର୍ମା ବୋଲି କୁହାଯାଇ-ପାରେ । ତାଙ୍କର ଶିଳ୍ପୀପ୍ରତିଭା ଓ ବୁଦ୍ଧି ଅତି ଅଦ୍ଭୁତ । ଗ୍ରୀସ୍‌ରେ ତାଙ୍କର ଜନ୍ମ କିନ୍ତୁ ସେ କ୍ରୀଟ୍‌କୁ ଉଠି ଆସିଥିଲେ । କ୍ରିଟ୍‌ର 'ପରାକ୍ରମୀ ରାଜା ମାଇନୋସ୍‌ଙ୍କ ବରାଦ ଅନୁସାରେ ଡେଡ଼ାଲସଙ୍କ ଲାବିରିନ୍ଥ ନିର୍ମାଣ କରିଥିଲେ । ଥିସିଅସ ଲାବିରିନ୍ଥରୁ ଖସିଯିବାରୁ ମାଇନୋସ୍‌ଙ୍କ କୋପ ଦୃଷ୍ଟି ଡେଡ଼ାଲସ୍‌ଙ୍କ ଉପରେ ପଡ଼ିଲା । ଥିସିଅସ୍‌ କ କୌଶଳରେ ଖସି ଗଲେ ସେ କଥା ରାଜାଙ୍କୁ ଜଣା ନ ଥିଲା । ଏକବୁଝିଆ ରାଜା ଡେଡ଼ାଲସ୍ ଓ ତାଙ୍କର ପୁତ୍ର ଇକାରସ୍‌ଙ୍କୁ ବନ୍ଦୀକଲେ ।

ବନ୍ଦୀଶାଳାରେ ଡେଡ଼ାଲସ୍ ମୁକ୍ତିର ଉପାୟ ଚିନ୍ତା କରୁଥାନ୍ତି । ସଶସ୍ତ୍ର ପ୍ରହରୀମାନଙ୍କୁ ଫାଙ୍କିଦେଇ ଖସିଯିବାର ବା ଉପାୟ କ'ଣ ? ଯିବେ ପୁଣି କେଉଁଠିକୁ ? ଯୁଆଡ଼େ ଯିବେ ଲୋକେ ଧରିଆଣି ରାଜାଙ୍କ ପାଖରେ ପହଞ୍ଚାଇ ଦେବେ । ଭାବି ଭାବି ଡେଡ଼ାଲସ୍ ସ୍ଥିରକଲେ, ବନ୍ଦୀଶାଳାର ଛାତ ଉପରୁ ତାଙ୍କୁ ଉଡ଼ିଯିବାକୁ ପଡ଼ିବ । ଚଢ଼େଇଙ୍କ ପର ସଂଗ୍ରହ କରି ଡେଡ଼ାଲସ୍ ଦୁଇହଳ ଡେଣା ତିଆରି କରିବାରେ ଲାଗିପଡ଼ିଲେ । ହଳେ ତାଙ୍କର ଓ ଆଉ ହଳେ ପୁଅର ।

ବହୁ ପରିଶ୍ରମ ପରେ ଡେଣା ତିଆରି ସରିଲା । ମଣିଷଟାକୁ ବୋହିନେବା ପରି ବଡ଼ ବଡ଼ ଡେଣା । ପୁଅକୁ ଡାକି ଡେଡ଼ାଲସ୍ ତାର

ତାର ଦୁଇ ବାହୁରେ ଦୁଇଟି ଡେଣା ଦୃଢ଼ଭାବେ ବାନ୍ଧିଦେଲେ । ତାପରେ ଚଢ଼େଇ ଛୁଆକୁ ଖଣ୍ଡି ଉଡ଼ା ଶିଖାଇଲା ପରି ସେ ଇକାରସ୍‌କୁ ଉଡ଼ିବାକୁ ଶିଖାଇଲେ । ପୁଅକୁ କିଛି ସମୟ ଅଭ୍ୟାସ କରାଇଲା ପରେ ବନ୍ଦୀଶାଳାରେ ଆଉ ଦଣ୍ଡେ ରହିବା ପାଇଁ ଡେଡାଲସ୍‌ଙ୍କର ମନ ହେଲା-ନାହିଁ । ଆକାଶରେ ଚଢ଼େଇ ପରି ଉଡ଼ିବାକୁ ଚେଷ୍ଟା କରିବା କେତେ ବିପଦଜନକ କଥା ସେ ବିଷୟରେ ଡେଡାଲସ୍ ପୂର୍ଣ୍ଣଭାବେ ସଚେତନ ଥିଲେ । ପୁଅକୁ ତାଙ୍କ ବାଷ୍ପରୁଦ୍ଧ କଣ୍ଠରେ କହିଲେ, "ଇକାରସ୍ ' ପୁଅ ମୋର ! ଆମେ ପକ୍ଷୀ ପରି ଆକାଶରେ ଉଡ଼ିବାକୁ ବାହାରିଛୁ । ପୂର୍ବରୁ କୌଣସି ମନୁଷ୍ୟ ଏଥିରେ କୃତକାର୍ଯ୍ୟ ହୋଇ ନାହାନ୍ତି । ତୁ ସାବଧାନ ରହିବୁ । ବେଶୀ ଉଚ୍ଚକୁ ମୋଟେ ଉଠିବୁ ନାହିଁ । ଖୁବ୍ ତଳକୁ ମଧ୍ୟ ଖସିବୁ ନାହିଁ । ତଳେ ଉଡ଼ିଲେ ତୋର ଡେଣା ଓଦା ହୋଇଯିବ । ଅଧିକ ଉଚ୍ଚରେ ମହମ ଲଗାଯାଇ ଯୋଡ଼ା ହୋଇଥିବା ଡେଣା ତରଳି ଯିବ । ମୋ ସାଙ୍ଗରେ ମୋତେ ଲକ୍ଷ୍ୟ ରଖି ଉଡ଼ିଲେ ତୋର କିଛି ଅନିଷ୍ଟ ହେବନାହିଁ ।

ସତେକି କେତେକାଳରୁ ଉଡ଼ିବାରେ ଅଭ୍ୟସ୍ତ ଦୁଇଟି ଚଢ଼େଇ ପରି ଡେଡାଲସ୍ ଓ ଇକାରସ୍ ସ୍ୱଚ୍ଛନ୍ଦରେ ବନ୍ଦୀଶାଳାର ଛାତ ଉପରୁ ଉଡ଼ିଗଲେ । କ୍ଷେତରେ ଚାଷୀ, ସମୁଦ୍ରରେ କେଉଟ ଓ ରାସ୍ତାରେ ବାଟୋଇ ସେ ଅଦ୍ଭୁତ ଦୃଶ୍ୟ ଦେଖି ତାଟକା ହୋଇଗଲେ । ସମସ୍ତେ ଭାବିଲେ, ଦେବତା ଦୁଇଜଣ ଉଡ଼ି ଯାଉଛନ୍ତି ।

ଆଃ ! ମୁକ୍ତିର ସ୍ୱାଦ କି ମଧୁର ! ନୀଳ ଆକାଶରେ ପହଁରିଲା-ବେଳେ ବାପ ପୁଅ ବିଭୋର ହୋଇଗଲେ । ଆନନ୍ଦରେ ଇକାରସ୍‌ର ଡେଣା ଚଞ୍ଚଳ ହୋଇ ଉଠିଲା । ନିଜକୁ ସମ୍ଭାଳି କରି ନ ପାରି ସେ ଆକାଶ ଛାତରେ ଭଲ ମାରିଲା । ପିତାଙ୍କ କଥା ଭୁଲି ସୂର୍ଯ୍ୟଙ୍କ ଆଡ଼କୁ ମୁହାଁଇଲା । ଫଳରେ ମହମରେ ଖଞ୍ଜା ଯାଇଥିବା ପରଗୁଡ଼ିକ ତରଳି ଗୋଟିକପରେ ଗୋଟିଏ ଝଡ଼ିଲେ । ପକ୍ଷହରା ଇକାରସ୍ ତଳକୁ ଖସି-ପଡ଼ିଲା । ତଳେ ସମୁଦ୍ର ।

ପୁଅକୁ ନ ଦେଖି ଡ଼ଡ଼ାଲସ୍ ବ୍ୟସ୍ତ ହୋଇ ପଡ଼ିଲେ । ଚକ୍ରା-
କାରରେ ସମୁଦ୍ର ଉପରେ ଘୂରିଲେ । ମାତ୍ର ଇକାରସ୍ କାହିଁ ? ଆକାଶରେ
ଖଣ୍ଡ ଖଣ୍ଡ ପକ୍ଷୀପର ଭାସୁଥିବାର ଦେଖି ଡ଼ଡ଼ାଲସ୍ ସବୁ ବୁଝିପାରିଲେ ।
ଦୁଃଖରେ ତାଙ୍କର ସୀମା ରହିଲା ନାହିଁ । ସେ ଗୋଟିଏ ପାଖ ଦ୍ୱୀପରେ
ଓହ୍ଲାଇ ପଡ଼ିଲେ ଓ ସେହି ଦ୍ୱୀପରେ ଇକାରସ୍‌କୁ କବର ଦେଲେ ।
ଦ୍ୱୀପଟି ଇକାରିଆ ନାମରେ ପରିଚିତ ।

ପୁଅପାଇଁ ଡ଼ଡ଼ାଲସ୍ ବହୁତ କାନ୍ଦିଲେ । ମାତ୍ର ରାଜାଙ୍କର
ସୈନ୍ୟମାନେ ପହଞ୍ଚିଯାଇ ପାରନ୍ତି ଆଶଙ୍କା କରି ସେ ପୁଣି ଆକାଶକୁ
ଉଠିଲେ ଓ ଉଡ଼ି ଉଡ଼ି ଯାଇ ସିସିଲିରେ ଓହ୍ଲାଇଲେ । ସିସିଲିର ରାଜା
ତାଙ୍କୁ ଖୁବ୍ ଆଦର ଅଭ୍ୟର୍ଥନା କଲେ । କାରଣ ଭାଗ୍ୟରେ ଥିଲେ
ଡ଼ଡ଼ାଲସ୍‌ଙ୍କ ପରି ସୁଦକ୍ଷ ଶିଳ୍ପୀ ରାଜ୍ୟକୁ ଆସନ୍ତି । ସିସିଲିରେ ଡ଼ଡ଼ାଲସ୍
ଅନେକ ସୁନ୍ଦର ମନ୍ଦିର ନଅର ତୋଳିଲେ ।

ଡ଼ଡ଼ାଲସ୍ ଠକ ପକେଇବା କଥା ମିନସ୍ ରାଜା ଆଦୌ
ଭୁଲିପାରିଲେ ନାହିଁ । ସେ ଚତୁର୍ଦ୍ଦିଗରେ ଦୂତ ପଠାଇ ତାଙ୍କୁ ଖୋଜିଲେ ।
ଡ଼ଡ଼ାଲସ୍ ସିସିଲିରେ ଅଛନ୍ତି ବୋଲି ସମ୍ବାଦ ପାଇ ମାଇନୋସ୍
ସଦଳବଳେ ସିସିଲି ଅଭିଯାନରେ ବାହାରିଲେ । ସିସିଲିର ରାଜା ମିନସ୍‌ର
ପରାକ୍ରମୀ ରାଜାଙ୍କ ସହିତ ଯୁଦ୍ଧ କରିବାକୁ ଚାହିଁଲେ ନାହିଁ । ତେଣୁ
ଡ଼ଡ଼ାଲସ୍‌ଙ୍କୁ ଦେଇଦେବାକୁ ରାଜି ହୋଇଗଲେ । ତାଙ୍କର ଆତିଥ୍ୟରେ
ପ୍ରୀତ ହୋଇ ମିନସ୍ ରାଜା ସିସିଲି ରାଜାଙ୍କ ନଅରରେ ସମ୍ମାନିତ ଅତିଥି-
ଭାବେ ରହୁଥାନ୍ତି । ଏଣେ ଡ଼ଡ଼ାଲସ୍‌ଙ୍କ ସହିତ ସିସିଲିର ତିନିଜଣ
ରାଜାଝିଅଙ୍କର ମନ୍ତ୍ରଣା ଚାଲିଥାଏ । ଡ଼ଡ଼ାଲସ୍‌ଙ୍କ ଠାରୁ ଅତିଅଦ୍ଭୁତ ଓ
ସୁନ୍ଦର ସୁନ୍ଦର ଖେଳଣା ଉପହାର ପାଇଥିବାରୁ ରାଜାଙ୍କ ତିନିଝିଅ ତାଙ୍କୁ
ଖୁବ୍ ଭଲ ପାଉଥିଲେ ।

ସିସିଲି ରାଜାଙ୍କ ଉଆସରେ ଅତି ସୌଖୀନ ସ୍ନାନାଗାର ଥାଏ ।
ମାଇନୋସ୍ ସ୍ନାନାଗାରର କୁଣ୍ଡରେ ପଶି ଆରାମରେ ଗାଧୋଉ ଥାଆନ୍ତି ।

ପୂର୍ବ ଯୋଜନା ଅନୁସାରେ ରାଜକନ୍ୟାମାନେ ନଳବାଟେ କୁଣ୍ଡ ଭିତରକୁ ଫୁଟନ୍ତାପାଣି ଗୁଡ଼ାଇଦେଲେ । ରାଜା ତାର ଭିତରେ ଛଟପଟ୍ ହୋଇ ମଲେ ।

ଡ଼ଡ଼ାଲସ୍‌ଙ୍କର ଅଦ୍ଭୁତ ଶିଳ୍ପୀପ୍ରତିଭା ସମ୍ପର୍କରେ ଅନେକ କାହାଣୀ ସୃଷ୍ଟି ହୋଇଥିଲା । ସେ ଗ୍ରୀସ୍‌ର ମହାବୀର ହେରାକ୍ଲିଜ୍ (ବା ହରକିଉଲସ୍)ଙ୍କର ଗୋଟିଏ ପ୍ରତିମୂର୍ତ୍ତି ଗଢ଼ିଥିଲେ । ତାହା ଏତେ ଜୀବନ୍ତ ଯେ ଥରେ ହରକିଉଲସ୍ ସେ ମୂର୍ତ୍ତିକୁ ଦେଖି ତାକୁ ଆଉ ଗୋଟାଏ ହରକିଉଲସ୍ ଭାବି କ୍ରୋଧରେ ଭାଙ୍ଗି ପକାଇଥିଲେ । ଲୋକେ ବିଶ୍ୱାସ କରୁଥିଲେ, ଡ଼ଡ଼ାଲସ୍ ଯେଉଁ ବଣ୍ୟ ପଶୁ ଗଢ଼ନ୍ତି ରାତିରେ ସେମାନଙ୍କୁ ବାନ୍ଧି ନ ରଖିଲେ ସେମାନେ ଜଙ୍ଗଲକୁ ପଳାନ୍ତେ ।



# ମାନବ ବନ୍ଧୁ ପ୍ରୋମିଥିଅସ୍

ଜିଅସ୍ ପ୍ରମୁଖ ଦେବତାମାନେ ଧରଣୀମାତାଙ୍କ ନାତି । ଧରଣୀମାତା ଆଦିମାତା । ୟୁରାନସ୍ ତାଙ୍କର ସ୍ୱାମୀ । ଧରଣୀମାତା ଓ ୟୁରାନସ୍‌ଙ୍କ ସନ୍ତାନଗଣ ଟିଟାନ୍ ନାମରେ ଖ୍ୟାତ । ସର୍ବକନିଷ୍ଠ ଟିଟାନ୍ କ୍ରୋନସ୍‌ଙ୍କ ନେତୃତ୍ୱରେ ଟିଟାନ୍‌ମାନେ ପିତାଙ୍କ ଠାରୁ ସମସ୍ତ କ୍ଷମତା ଛଡ଼ାଇ ଆଣିଥିଲେ । ଜିଅସ୍ ଓ ଅନ୍ୟ ଦେବଗଣ କ୍ରୋନସ୍‌ଙ୍କ ସନ୍ତାନ । ଧରଣୀମାତା ନାତିମାନଙ୍କୁ ପ୍ରବର୍ତ୍ତାଇବା ଫଳରେ କ୍ଷମତା ପାଇଁ ଦେବତା ଓ ଟିଟାନ୍‌ଙ୍କ ମଧ୍ୟରେ ତୁମୁଳ ଲଢ଼େଇ ହେଲା । ଏହି ଲଢ଼େଇରେ ତ୍ରିପୁର କମ୍ପିଲା । ଶେଷରେ ଦେବତାମାନେ ବିଜୟୀ ହୋଇଥିଲେ ।

ପ୍ରୋମିଥିଅସ୍ ଜଣେ ଟିଟାନ୍ । ସେ ମନୁଷ୍ୟଜାତିର ସ୍ରଷ୍ଟା । ଟିଟାନ୍ ହେଲେ ମଧ୍ୟ ପ୍ରୋମିଥିଅସ୍ ଜିଅସ୍‌ଙ୍କ ପକ୍ଷେ ଥିଲେ । ପ୍ରୋମିଥିଅସ୍‌ଙ୍କ ଭାଇ ଆଟଲାସ୍ ଟିଟାନ୍ ପକ୍ଷର ସେନାପତି । ସେ ଅମିତ ଶକ୍ତିଶାଳୀ । ଆଟଲାସ୍ ଆଟଲାଣ୍ଟିସ୍ ମହାଦେଶର ଅଧିପତି ଥିଲେ । ପରବର୍ତ୍ତୀ କାଳରେ ଆଟଲାଣ୍ଟିସ୍ ସମୁଦ୍ର ଗର୍ଭରେ ହଜିଯାଇଛି ।

ଟିଟାନ୍‌ମାନେ ପରାସ୍ତ ହେବା ପରେ ଚିରକାଳ ଆକାଶକୁ ଦୁଇ ବାହୁରେ ଟେକି ଧରିବାର ଦଣ୍ଡ ଆଟଲାସ୍‌ଙ୍କୁ ମିଳିଥିଲା । କେବଳ ଥରେ

ମହାସାଗର ଦେବକନ୍ୟା ଅଳ୍ପ ସମୟ ପାଇଁ ତାଙ୍କୁ ଏ ଦାୟିତ୍ୱରୁ ଅବ୍ୟାହତି ଦେଇଥିଲେ ।

ପ୍ରୋମିଥିଅସ୍ ଦେବତାଙ୍କ ପକ୍ଷରେ ଥିଲେ ମଧ୍ୟ ଭିନ୍ନ କାରଣରୁ ସେ ଜିଅସ୍‌ଙ୍କ କୋପ ଦୃଷ୍ଟିରେ ପଡ଼ିଲେ । ଆଟଲସ୍‌ଙ୍କ ପରି ତାଙ୍କ ପାଇଁ ମଧ୍ୟ କଠୋର ଦଣ୍ଡର ବ୍ୟବସ୍ଥା ହୋଇଥିଲା ।

ପ୍ରୋମିଥିଅସ୍ ବିଜ୍ଞ ପୁରୁଷ । ସେ ଏଥେନାଙ୍କୁ ଗଣିତ, ଜ୍ୟୋତିର୍ବିଜ୍ଞାନ, ଧାତୁବିଜ୍ଞାନ, ଚିକିତ୍ସାବିଦ୍ୟା, ସ୍ଥାପତ୍ୟ ପ୍ରଭୃତି ବିଷୟ ଶିକ୍ଷା ଦେଇଥିଲେ । ଦେବୀ ଏଥେନା ମନୁଷ୍ୟଙ୍କୁ ଏହିସବୁ ବିଦ୍ୟା ପ୍ରଦାନ କରିବେ ବୋଲି ପ୍ରୋମିଥିଅସ୍ ଜାଣିଥିଲେ । ଜିଅସ୍ କିନ୍ତୁ ପ୍ରୋମିଥିଅସ୍-ଙ୍କର ଏଚେଷ୍ଟା ମାନବପ୍ରୀତି ପସନ୍ଦ କଲେ ନାହିଁ । ମଣିଷଙ୍କର ବୁଦ୍ଧିର ଦ୍ରୁତ ବିକାଶ ଓ ଅଧିକ ଶକ୍ତି ହାସଲ ଯୋଗୁ ଜିଅସ୍ ମନ ଭିତରେ ରାଗିଯାଇ ଥିଲେ ।

ଥରେ ଦେବତାଙ୍କ ମଧ୍ୟରେ ଗୋଟିଏ କଥା ନେଇ ମତଭେଦ ସୃଷ୍ଟି ହେଲା । ବଳି ପଡ଼ୁଥିବା ଷଣ୍ଢର କେଉଁ ଅଂଶ ଦେବତାଙ୍କ ପାଖରେ ଭୋଗ ଲାଗିବ ଓ କେଉଁ ଅଂଶ ମଣିଷ ତାର ଖାଇବା ପାଇଁ ରଖିବ—ଏହି କଥା ନେଇ ବିବାଦ ଲାଗିଥାଏ । ପ୍ରୋମିଥିଅସ୍‌ଙ୍କୁ ବିଚାରକ ହେବା ପାଇଁ ଅନୁରୋଧ କରାଗଲା । ପ୍ରୋମିଥିଅସ୍ ଗୋଟିଏ ଷଣ୍ଢମାରି ତା ଚମଡ଼ାରେ ଦୁଇଟି ଥଳି ତିଆରି କଲେ । ଗୋଟିଏ ଥଳିରେ ସେ ଷଣ୍ଢର ମାଂସତକ ପୁରାଇ ଥଳି ଉପରେ ଅନ୍ତଃବୃକ୍କନାଳି ରଖିଦେଲେ । ଅନ୍ୟ ଥଳିରେ ଷଣ୍ଢର ସବୁ ହାଡ଼ ପୁରାଇ ଉପରେ ଚର୍ବି ଥୋଇଲେ । ଏହାପରେ ଗୋଟିଏ ବ୍ୟାଗ୍ ବାଛିବାକୁ ଜିଅସ୍‌ଙ୍କୁ କହିଲେ । ଏହାର ଅର୍ଥ, ଜିଅସ୍ ଯେଉଁ ବ୍ୟାଗ ବାଛିବେ ସେଇ ଅନୁସାରେ ଦେବତାମାନେ ଭାଗ ପାଇବେ । ଅନ୍ତଃବୃକ୍କନାଳୀକୁ କିଏ ବା ପସନ୍ଦ କରିବ ? ଜିଅସ୍ ଚର୍ବିଥିବା ବ୍ୟାଗଟିକୁ ଧରିଲେ । ଦେଖାଗଲା ବ୍ୟାଗ ଭିତରେ ଖାଲି ହାଡ଼ । ଜିଅସ୍ ରାଗିଗଲେ । ସେ ସ୍ଥିର କଲେ ଯେ ମଣିଷକୁ ଅଗ୍ନି ଦିଆଯିବ ନାହିଁ । ମଣିଷ ଭାଗରେ ଯଦି ମାଂସ ପଡ଼ିଲା ତେବେ ତାକୁ ସେ କଞ୍ଚା ଖାଉ ।

ଏଥେନାଙ୍କ ସାହାଯ୍ୟରେ ପ୍ରୋମିଥିଅସ୍ ଲୁଚି କରି ଅଲମ୍ପସ୍‌ରେ ପ୍ରବେଶ କଲେ ଓ ସୂର୍ଯ୍ୟଙ୍କ ଠାରୁ ଖଣ୍ଡେ ଜଳନ୍ତା ରଡ଼ ନେଇ ମନୁଷ୍ୟଙ୍କୁ ଦେଲେ ।

ଏ ଘଟଣାର ପ୍ରତିଶୋଧ ନେବା ପାଇଁ ଜିଅସ୍ ଗୋଟିଏ ଅତି ସୁନ୍ଦରୀ ନାରୀ ସୃଷ୍ଟି କଲେ । ତାଙ୍କର ନାମ ପାଣ୍ଡୋରା । ପାଣ୍ଡୋରାଙ୍କୁ ପ୍ରୋମିଥିଅସ୍‌ଙ୍କ ବିଶ୍ୱସ୍ତ ଭାଇ ଏପିମିଥିଅସ୍‌ଙ୍କ ପାଖକୁ ପଠାଇ ଦିଆଗଲା । ପ୍ରୋମିଥିଅସ୍ ଓ ଏପିମିଥିଅସ୍ ଭାଇ ଦୁହେଁ ଦେବତାଙ୍କ ପକ୍ଷରେ ରହି ଲଢ଼ୁଥିଲେ । ପାଣ୍ଡୋରା କ'ଣ କଲେ ତାହା ଆଉ ଏକ କାହାଣୀ ।

ପ୍ରୋମିଥିଅସ୍‌ଙ୍କୁ ତାଙ୍କର ଅପରାଧ ପାଇଁ ଦେବମାନଙ୍କ ଅଗୋଚର ଗୋଟିଏ ଦୁର୍ଗମ ପାହାଡ଼ ଉପରେ ବାନ୍ଧି ଦିଆଗଲା । ସେଠାରେ ତାଙ୍କ ପାଇଁ ଏହିପରି ଦଣ୍ଡର ବ୍ୟବସ୍ଥା ହୋଇଥାଏ । ଗୋଟିଏ ବିରାଟ ଶାଗୁଣା ତାଙ୍କୁ ଦିନଯାକ ଖୁମ୍ପି ଖାଏ । ଦିନରେ ସେ ଯେତିକି ମାଂସ ଖାଏ, ସେତିକି ରାତିରେ କଅଁଳି ଯାଏ । ଫଳରେ ପ୍ରୋମିଥିଅସ୍ ମରି ନ ପାରି ମରଣ ଯନ୍ତ୍ରଣା ଭୋଗୁଥାନ୍ତି । ଅନନ୍ତ କାଳପାଇଁ ପ୍ରୋମିଥିଅସ୍‌ଙ୍କ ପ୍ରତି ଏହି ଦଣ୍ଡବିଧାନ ହୋଇଥିଲା ।

ମାତ୍ର କେତେ କାଳ ଅନ୍ତେ ଜିଅସ୍‌ଙ୍କ ମନରେ ଦୟା ଜାତ ହେଲା । ଜିଅସ୍‌ଙ୍କ ପୁତ୍ର ମହାବୀର ହେରାକ୍ଲିଜ୍ ତାଙ୍କର ଅନୁମତି ନେଇ ସେହି ଦୁର୍ଗମ ପର୍ବତ ଶିଖରକୁ ଉଠିଥିଲେ ଓ ଦେବଶକ୍ତିରେ ଗଗ୍ରାସନ୍ ଶାଗୁଣାକୁ ମାରି ପ୍ରୋମିଥିଅସ୍‌ଙ୍କୁ ମୁକୁଳାଇ ଥିଲେ ।

●

# ପଣ୍ଡୋରା ଓ ଦୁଃଖର ବାକ୍ସ

ମନୁଷ୍ୟ ଓ ପଶୁପକ୍ଷୀଙ୍କୁ ସୃଷ୍ଟି କରିବାର ଦାୟିତ୍ୱ ପ୍ରୋମିଥିଅସ୍ ଓ ଏପିମିଥିଅସ୍ ଦୁଇ ଭାଇଙ୍କ ଉପରେ ନ୍ୟସ୍ତ ଥିଲା । ଏପିମିଥିଅସ୍ ବିଭିନ୍ନ ଜାତିର ପଶୁ ସୃଷ୍ଟି କରି ପ୍ରତ୍ୟେକକୁ ତା'ର ବିଶେଷ ଗୁଣ ପ୍ରଦାନ କରିଥିଲେ । ସେ ସିଂହକୁ ଦେଲେ ଶକ୍ତି ଆଉ ସାହାସ, ସାପକୁ ଦେଲେ ସର୍ପିଳ ଗତି, ଘୋଡ଼ାକୁ ବୁଦ୍ଧି, ଅନ୍ୟାନ୍ୟ ପଶୁଙ୍କୁ ଆଉ ଆଉ ଗୁଣ ।

ପ୍ରୋମିଥିଅସ୍ କିଛି କାଦୁଅରେ ଦେବତାଙ୍କ ଆକୃତି ଅନୁସାରେ ମଣିଷ ଗଢ଼ିଲେ । ଅନ୍ୟ ପଶୁଙ୍କ ପରି ମଣିଷ ଚାରିଗୋଡ଼ିଆ ହେଲା ନାହିଁ । ସେ ଭୂଇଁ ଉପରେ ସିଧା ଛିଡ଼ା ହୋଇ ଆକାଶକୁ ଚାହିଁ ପାରିଲା । ମଣିଷ ଗଢ଼ି ସାରି ପ୍ରୋମିଥିଅସ୍ ଦେଖିଲେ, ଏପିମିଥିଅସ୍ ପଶୁମାନଙ୍କୁ ସବୁ ବାଣ୍ଟି ସାରିଛନ୍ତି । ମଣିଷ ପାଇଁ କିଛି ନାହିଁ । ସେ ସ୍ୱର୍ଗରୁ ଅଗ୍ନି ଆଣି ମଣିଷକୁ ଦେଲେ । ଅଗ୍ନି ବ୍ୟବହାର କରି ମଣିଷ ରାନ୍ଧି ପାରିବ, ଶୀତରୁ ରକ୍ଷା ପାଇବ । ଅଗ୍ନି ଚୋରିର ଦଣ୍ଡ ପ୍ରୋମିଥିଅସ୍‌ଙ୍କୁ ଭୋଗିବାକୁ ପଡ଼ିଲା ।

ମଣିଷକୁ ଶାସ୍ତି ଦେବାକୁ ଜିଅସ୍ ଏକ ଉପାୟ କଲେ । ଗୋଟିଏ ଅତି ସୁନ୍ଦରୀ ନାରୀ ଗଢ଼ି ତାକୁ ଏପିମିଥିଅସ୍ ପାଖକୁ ପଠାଇ-ଦେଲେ । ଏହି ନାରୀର ନାମ ପାଣ୍ଡୋରା । ଏପିମିଥିଅସ୍ ପାଣ୍ଡୋରାକୁ

ବିବାହ କଲେ । ବିବାହ ପରେ ଗୋଟିଏ ବାକ୍ସ ଦେଖାଇ ତାଙ୍କୁ କଦାପି ନ ଖୋଲିବାକୁ ସେ ପାଣ୍ଡୋରାକୁ ବାରମ୍ବାର ସତର୍କ କରି-ଦେଲେ । ମଣିଷ ଓ ପଶୁଙ୍କୁ ସୃଷ୍ଟି କଲା ପରେ ଯେଉଁ ସବୁ ଅନାବଶ୍ୟକ ଗୁଣ ବଳିଲା ସେ ଗୁଡ଼ିକ ଏହି ବାକ୍ସରେ ଥାଏ ।

ବାକ୍ସ ଭିତରେ କ'ଣ ଅଛି ଜାଣିବା ପାଇଁ ପାଣ୍ଡୋରାଙ୍କର କୌତୂହଳ ହୁଏ । ନିଶ୍ଚୟ କିଛି ଅଦେଖା ଆଶ୍ଚର୍ଯ୍ୟ ଜିନିଷ ଥିବ । ତେବେ ସ୍ୱାମୀଙ୍କର ବାରଣ ମନରେ ଥିବାରୁ ସେ ବାକ୍ସ ଖୋଲନ୍ତି ନାହିଁ । ଦିନେ ଏପିମିଥିଅସ୍ ଘରେ ନ ଥାନ୍ତି । ପାଣ୍ଡୋରା ଭାବିଲେ, ବାକ୍ସକୁ ଖୋଲି ଟିକିଏ ଦେଖିଦେଲେ କ୍ଷତି କ'ଣ ? ଖୋଲିବା ସାଙ୍ଗେ ସାଙ୍ଗେ ବନ୍ଦ କରିଦେଲେ କିଛି ହେବ ନାହିଁ । ଏହା ଭାବି ସେ ବାକ୍ସକୁ ଖୋଲିଦେଲେ । ତା' ପରେ ଆଉ ଯାଆନ୍ତି କୁଆଡେ ?

ମାଛି ପରି ଛୋଟ ଛୋଟ ପତଙ୍ଗସବୁ ବାକ୍ସରୁ ବାହାରି ପାଣ୍ଡୋରାଙ୍କୁ ବିନ୍ଧି ପକାଇଲେ । ମୁହୂର୍ତ୍ତକରେ ସମସ୍ତେ ଘରସାରା ଖେଳି-ଗଲେ । ସେମାନଙ୍କୁ ଧରି ବାକ୍ସରେ ପୂରାଇବାର ଉଦ୍ୟମ ପାଣ୍ଡୋରାଙ୍କର ବ୍ୟର୍ଥ ହେଲା । ସେମାନେ ଘର ଛାଡ଼ି ଦୋକୁ ଗଲେ । କ୍ରମଶ ପୃଥିବୀଯାକ ଖେଳାଇ ହୋଇ ମଣିଷଙ୍କୁ ଦଂଶନ କଲେ ।

ଏହି ପତଙ୍ଗ ସବୁ ହେଉଛନ୍ତି ଦୁଃଖ, ରୋଗ; ଯନ୍ତ୍ରଣା, ଈର୍ଷା, ଅହଙ୍କାର, ଦମ୍ଭ, ସ୍ୱାର୍ଥପରତା ଇତ୍ୟାଦି ଯାବତୀୟ ମନ୍ଦର ଜୀବନ୍ତ ବିଗ୍ରହ । ପ୍ରୋମିଥିଅସ୍ ଓ ଏପିମିଥିଅସ୍ ସେମାନଙ୍କୁ ବନ୍ଦ କରି ରଖିଥିବା ପର୍ଯ୍ୟନ୍ତ ଦୁଃଖ କ'ଣ ମଣିଷ ଜାଣି ନ ଥିଲା । ଶାନ୍ତି ଓ ଆନନ୍ଦରେ ମଣିଷର କାଳ କଟୁଥିଲା । ମାତ୍ର ପାଣ୍ଡୋରା ବାକ୍ସ ଖୋଲିଦେବା ପରେ ମଣିଷକୁ ଦୁଃଖ, ଅଭାବ, ବ୍ୟାଧି ଓ ଈର୍ଷା, ଅହଙ୍କାର ଇତ୍ୟାଦି ଘୋଟିଯାଇଛି ।



# ବୀର ପର୍ସିଅସ୍ ଓ ରାକ୍ଷସୀ ମେଡୁସା

ଆକ୍ରିସିଅସ୍ ଗ୍ରୀସ୍‌ର ଆର୍‌ଗସ୍ ନଗରର ରାଜା । ତାଙ୍କର ପୁଅ ନ ଥାନ୍ତି । ଗୋଟିଏ ବୋଲି ଝିଅ ଡାନେଇ । ପୁଅ ହେବ କି ନାହିଁ ବୋଲି ଥରେ ରାଜା ଗୋଟିଏ ଦେବ ମନ୍ଦିରରେ ପ୍ରଶ୍ନ କରିଥିଲେ । ଉତ୍ତର ମିଳିଲା ଯେ ତାଙ୍କ ଭାଗ୍ୟରେ ପୁଅ ନାହିଁ । ଓଲଟି ଝିଅର ପୁଅ ହାତରେ ପ୍ରାଣନାଶ ହେବ । ଏ କଥା ଶୁଣି ଆକ୍ରିସିଅସ୍ ଭୂମିରେ ଡାନେଇଙ୍କୁ ବନ୍ଦୀ କରି ରଖିଲେ ।

ଦିନେ ବନ୍ଦଶାଳାରେ ସୁବର୍ଣ୍ଣ ବୃଷ୍ଟି ହେଲା ଓ ବର୍ଷା ଭିତରୁ ଖସିପଡ଼ି ଜିଅସ୍ ଡାନେଇ ଆଗରେ ଉଭା ହେଲେ । ସେ ଡାନେଇଙ୍କୁ ବିବାହ କଲେ । ଦୁହିଁଙ୍କର ଗୋଟି ପୁଅ ହେଲା । ଏହି ଶିଶୁର ନାମ ରହିଲା ପର୍ସିଅସ୍ । ପିଲାଟି ଜିଅସ୍‌ଙ୍କ ପୁଅ ବୋଲି ଆକ୍ରିସିଅସ୍ ବିଶ୍ୱାସ କରି ପାରିଲେ ନାହିଁ । ଝିଅ ଓ ନାତିକୁ ଗୋଟିଏ କାଠ ସିନ୍ଦୁକରେ ପୂରାଇ ସମୁଦ୍ରରେ ଭସାଇ ଦେଲେ ।

ସିନ୍ଦୁକଟି ଯାଇ ଗୋଟିଏ ଦ୍ୱୀପରେ ଲାଗିଲା । ଜଣେ ନାବିକ ସିନ୍ଦୁକ ଖୋଲି ମାଆ ଓ ପୁଅକୁ ଦ୍ୱୀପର ରାଜାଙ୍କ ପାଖକୁ ନେଇଗଲେ । ତାଙ୍କର ଉଆସରେ ପର୍ସିଅସ୍ ବଢ଼ିଲେ ।

ଡାନେଇଙ୍କୁ ବିବାହ କରିବାକୁ ସେ ରାଜାଙ୍କର ଇଚ୍ଛା ଥାଏ । ମାତ୍ର ଡାନେଇ ରାଜି ହେଉ ନ ଥାନ୍ତି । ବଡ ହେବାରୁ ପର୍ସିଅସ୍ ମଧ୍ୟ ଏ ପ୍ରସ୍ତାବର ବିରୋଧ କଲେ । ରାଜା ଦେଖିଲେ, ପର୍ସିଅସ୍ ଦିନକୁ ଦିନ ବଳୁଆ ଯୁବକ ହୋଇ ଉଠୁଛି । ଭବିଷ୍ୟତରେ ତାକୁ ଡରିକରି ଚଳିବାକୁ ପଡ଼ିବ । ଗୋଟାଏ ବୁଦ୍ଧି କରି ରକ୍ଷାସୀ ମେଡୁସାର ମୁଣ୍ଡ ଆଣିବାପାଇଁ ସେ ପର୍ସିଅସ୍‌କୁ ରାଜି କରାଇ ଦେଲେ ।

ରାକ୍ଷାସୀ ମେଡୁସାର ମୁଣ୍ଡ ଆଣିବାକୁ ଯିବା ମୃତ୍ୟୁ ସହିତ ସମାନ । ସେ ରାକ୍ଷାସୁଣୀର ପାହାଡ଼ ପରି ମୁଣ୍ଡ । ମୁଣ୍ଡରେ ବାଳପରି ଉଠିଥିବା ଅସଂଖ୍ୟ ସାପ ଫଣାଟେକି ଗର୍ଜୁଥାନ୍ତି । ଦାନ୍ତ ଗୁଡାକ ହାତୀଦାନ୍ତଠାରୁ ବଡ଼ । ସେ ବିକଟାଳ ମୁହଁକୁ ଯିଏ ଚାହିଁବଏ ସେ ପଥର ପାଲଟି ଯାଏ । ପୁଣି ମେଡୁସା ଏକୁଟିଆ ନୁହେଁ । ସାଙ୍ଗରେ ତାର ଆଉ ଦୁଇଟି ଭଉଣୀ ଥାଆନ୍ତି ।

ମେଡୁସା ମରୁ ବୋଲି ଦେବତା ମାନେ ଚାହୁଁଥିଲେ । ତେଣୁ ଦେବୀ ଏଥେନା ପର୍ସିଅସ୍‌ଙ୍କ ପାଖକୁ ଆସି ତାଙ୍କୁ ଅଭୟ ପ୍ରଦାନ କଲେ । ପ୍ରଥମେ ସେ ମେଡୁସା ଓ ତାର ଦୁଇ ଭଉଣୀଙ୍କର ଚିତ୍ର ଦେଖାଇ ପର୍ସିଅସ୍‌ଙ୍କୁ ସେମାନଙ୍କ ସହିତ ଭଲ ଭାବେ ପରିଚିତ କରାଇ ଦେଲେ । ମେଡୁସା ମୁହଁକୁ କଦାପି ଚାହିଁବାକୁ ହେବ ନାହିଁ । ଦେବୀ ପର୍ସିଅସ୍‌ଙ୍କୁ ଗୋଟିଏ ଚକ୍ ଚକ୍ ଉଜ୍ଜ୍ୱଳ ଢାଲ ଦେଇ କହିଲେ ଯେ, ଢ଼ାଲରେ ରାକ୍ଷାସୀର ପ୍ରତିବିମ୍ବ ଦେଖି କାର୍ଯ୍ୟ କରିବାକୁ ହେବ ।

ମେଡୁସାର ମୁଣ୍ଡ କାଟିବା ପରି ଗୋଟିଏ ଖଣ୍ଡାଦେଲେ ଦେବତା ହର୍ମିଜ୍ । ମାତ୍ର ସେତିକରେ ଚଳିବ ନାହିଁ । ପର୍ସିଅସ୍‌ଙ୍କର ଆହୁରି ଦରକାର ପଡ଼ୁଥିଲା ହଳେ ଉଡନ୍ତା ଚପଲ, ଅଦୃଶ୍ୟ ଟୋପି ଓ ମେଡୁସାର ମୁଣ୍ଡ ରଖିବା ପାଇଁ ଏକ କୁହୁକ ଥଳୀ । ମୃତ୍ୟୁ ଦେବତା ହେଡିଜ୍‌ଙ୍କର ଅଦୃଶ୍ୟ ଟୋପି ଅଛି ସେ ଏହି ଟୋପି ପିନ୍ଧିଥିବାରୁ ତାଙ୍କୁ କେହି ଦେଖି ପାରନ୍ତି ନାହିଁ । କେବଳ ଅଦୃଶ୍ୟ ଟୋପି ନୁହେଁ, ଆଉ

ଦୁଇଟି ଜନଷ ମଧ୍ୟ ପାତାଳ ପୁର (ଯମାଳୟ ପାତାଳରେ) ର ଷ୍ଟାଇ ନଦୀର ଜଳପରୀଙ୍କ ଜମାଥାଏ ।

ଏହି ଜଳପରୀଙ୍କର ଠିକଣା କପର ମିଳବ ସେଇ ହେଲ ସମସ୍ୟା । ଆଟ୍ଲାସ୍ ପାହାଡ଼ର ପାଦଦେଶରେ ରହୁଥିବା ତିନଜଣ ଅସୁରୁଣୀ ଭଉଣୀଙ୍କୁ ଏହି ଠିକଣା ଜଣାଯାଏ । ଏମାନେ ବଡ ବିଚିତ୍ର ଅସୁରୁଣୀ । ତିନ ଭଉଣୀଙ୍କର ଗୋଟିଏ ଆଖି । ଯାହାର ଆଖି ଦରକାର ପଡ଼େ ସେ ନେଇ ତାକୁ କପାଳରେ ଖୋଷି ଦିଏ ।

ପର୍ସିଅସ୍ ପାହାଡ ଉପରୁ ନିଃଶବ୍ଦରେ ଓହ୍ଲାଇ ତିନ ଭଉଣୀଙ୍କ ପାଖକୁ ଗଲେ । ଜଣେ ଆଉ ଜଣକୁ ଆଖି ବଢାଇ ଦେଉଥିବା ବେଳେ ସେଇଟିକୁ ସେ ଝାମ୍ପି ନେଲେ । ଅସୁରୁଣୀଙ୍କ ଭିତରେ ଚହଳ ପଡ଼ିଗଲା । ଜଳପରୀଙ୍କ ଠିକଣା ନ ପାଇଲେ ଆଖି ଫେରାଇବେ ନାହିଁ ବୋଲି ପର୍ସିଅସ୍ ଅଡ଼ି ବସିଲେ । ବାଧ୍ୟ ହୋଇ ଅସୁରୁଣୀମାନେ ଠିକଣା ବତାଇ ଦେଲେ ।

ପର୍ସିଅସ୍ ଜଳପରୀଙ୍କ ଠାରୁ ଉଡନ୍ତା ଚପଲ; ଅଦୃଶ୍ୟ ଟୋପି ଓ କୁହୁକ ଥଳି ସଂଗ୍ରହ କଲେ । ଉଡ଼ନ୍ତା ଚପଲ ପିନ୍ଧି ସେ ଅସୁରୁଣୀ ରହୁଥିବା ଦ୍ୱୀପ ଆଡକୁ ଉଡ଼ିଗଲେ । ଅସୁରୁଣୀମାନେ ଶୋଇଥାନ୍ତି । ସେମାନଙ୍କୁ ଅନେକ ହିଂସ୍ର ପଶୁ ଜଗି ବସିଥାନ୍ତି । ମେଡୁସାର ମୁଣ୍ଡକୁ ନଚାହିଁବା କଥା ପର୍ସିଅସ୍ଙ୍କର ମନେଥାଏ । ଢାଲରେ ମେଡୁସାର ପ୍ରତିବିମ୍ବ ଦେଖି ସେ ତାର ଆଡ଼କୁ ଅଗ୍ରସର ହେଲେ । ଦେବୀ ଏଥେନା ମଧ୍ୟ ତାଙ୍କ ହାତଧରି ବାଟକଢ଼େଇ ନେଉଥାନ୍ତି । ଦେବଦତ୍ତ ଖଣ୍ଡାରେ ସେ ଅସୁରୁଣୀର ବେକକୁ ଏକାଚୋଟକେ ହାଣି ପକାଇ ତା ମୁଣ୍ଡକୁ କୁହୁକ ବ୍ୟାଗ୍ ଭିତରେ ପୁରାଇ ଦେଲେ ।

ପର୍ସିଅସ୍ ଆଶ୍ଚର୍ଯ୍ୟ ହୋଇ ଦେଖିଲେ, ମେଡୁସା ଗଣ୍ଡି ଭିତରୁ ଗୋଟିଏ ଉଡନ୍ତା ଅଶ୍ୱ ଓ ସୁବର୍ଣ୍ଣ ଖଡ୍ଗ ଧରିଥିବା ଜଣେ ବୀରପୁରୁଷ

ବାହାର ଆସିଲେ । ସେ ଅଶ୍ୱ ହେଉଛନ୍ତି ସାଗର ଦେବତା ପୋସିଡନ୍‌ଙ୍କର ବିଖ୍ୟାତ ଅଶ୍ୱ ପେଗାସସ୍ ।

ସୂର୍ଯ୍ୟାସ୍ତ ସମୟରେ ପର୍ସିଅସ୍ ଟିଟାନ୍ ଆଟ୍‌ଲସ୍‌ଙ୍କ ପ୍ରାସାଦ ନିକଟରେ ଓହ୍ଲାଇଲେ । ଯିବାବେଳେ ଆଟ୍‌ଲସ୍ ତାଙ୍କୁ ଭଲ ବ୍ୟବହାର ଦେଖାଇ ନ ଥିଲେ । ତେଣୁ ସେ ଆଟଲସ୍‌ଙ୍କୁ ମେଡୁସାର ମୁହଁ ଦେଖାଇ ପାହାଡ କରିଦେଲେ ।

ଆକାଶରେ ଉଡି ଘରକୁ ଫେରିବା ବାଟରେ ପର୍ସିଅସ୍ ଗୋଟିଏ ବିଚିତ୍ର ଦୃଶ୍ୟ ଦେଖିଲେ । ସମୁଦ୍ର କୂଳରେ ଗୋଟିଏ ଅତି ସୁନ୍ଦରୀ ଝିଅ ପଥର ଖୁଣ୍ଟରେ ବନ୍ଧା ହୋଇଛି । ତା'ର ସୌନ୍ଦର୍ଯ୍ୟରେ ମୁଗ୍ଧ ହୋଇ ସେ ତଳକୁ ଓହ୍ଲାଇଲେ । ସେଇଟା ଇଥିଓପିଆ ଦେଶ । ଝିଅଟି ଇଥିଓପିଆର ରଜା ସେଫିଅସ୍‌ଙ୍କ କନ୍ୟା । ତା'ର ମାଆଙ୍କର ନାମ କାସିଓପିଆ । ଝିଅର ନାମ ଆଣ୍ଡ୍ରୋମେଡା । କାସିଓପିଆ ଗର୍ବ କରୁଥିଲେ ଯେ ସେ ଓ ତାଙ୍କ ଝିଅ ଜଳପରୀଙ୍କ ଠାରୁ ମଧ୍ୟ ସୁନ୍ଦରୀ । ଏ କଥା ଜଳପରୀମାନେ ସହି ପାରିଲେ ନାହିଁ । ସେମାନେ ଯାଇ ପୋସିଡନ୍‌ଙ୍କ ପାଖରେ ଗୁହାରି କଲେ । ପୋସିଡନ୍‌ଙ୍କ କୋପ ଯୋଗୁ ସେଫିଅସ୍‌ଙ୍କ ରାଜ୍ୟରେ ଭୟଙ୍କର ବନ୍ୟାହେଲା । ଗୋଟିଏ ରାକ୍ଷସୀ ମଧ୍ୟ ମାତିଲା । କାହିଁକି ଏପରି ଘଟୁଛି ଓ କ'ଣ ପ୍ରତିକାର କରିବାକୁ ହେବ ଜାଣିବାକୁ ରାଜା ଜ୍ୟୋତିଷଙ୍କ ସହିତ ପରାମର୍ଶ କଲେ । ସମସ୍ତେ କହିଲେ ଆଣ୍ଡ୍ରୋମେଡାକୁ ବଳି ଦେଲେ ଜଳଦେବତାଙ୍କ କୋପ ଶାନ୍ତ ହେବ । ତେଣୁ ବାଧ୍ୟ ହୋଇ ରାଜା ଝିଅକୁ ସମୁଦ୍ର କୂଳରେ ବାନ୍ଧିଥାନ୍ତି । ଅଳ୍ପ ସମୟ ପରେ ସେଇଟା ଏ ଅସୁରୁଣୀ ତାକୁ ଖାଇବାକୁ ଆସିବ ।

ଘଟଣାଟା ବୁଝିସାରି ପର୍ସିଅସ୍ ରାଜା ରାଣୀଙ୍କୁ କହିଲେ ଯେ ଅସୁରୁଣୀକୁ ମାରି ସେ ଆଣ୍ଡ୍ରୋମେଡାକୁ ଉଦ୍ଧାର କରିବେ । ତେବେ ଗୋଟିଏ ସର୍ତ୍ତରେ । ଆଣ୍ଡ୍ରୋମେଡା ତାଙ୍କୁ ବିବାହ କରିବ । ରାଜା ଆଗ୍ରହରେ ଏ ପ୍ରସ୍ତାବରେ ରାଜି ହୋଇଗଲେ ।

ଆକାଶକୁ ଉଡ଼ ଯାଇ ପର୍ସିଅସ୍ ଉପରେ ଅପେକ୍ଷା କରୁଥାନ୍ତି । ରକ୍ଷାସୁଣୀ ସମୁଦ୍ରରୁ ବାହାରିଲାରୁ ପର୍ସିଅସ୍ ତା ଉପରେ ଝାମ୍ପ ଦେଇ ଖଣ୍ଡାରେ ହାଣିଦେଲେ । ଝିଅ ବଞ୍ଚିଯିବାରୁ ରାଜାରାଣୀ ବଡ଼ ଖୁସି । ମାତ୍ର ଝିଅକୁ ପର୍ସିଅସ୍‌ଙ୍କ ସହିତ ବିବାହ ଦେବାକୁ ବାପମାଙ୍କର ଇଚ୍ଛା ନ ଥିଲା । ରାଣୀ ଆଣ୍ଡ୍ରୋମେଡ଼ା ପାଇଁ ପୂର୍ବରୁ ଜଣେ ବର ମନୋନୀତ କରିଥିଲେ । କିନ୍ତୁ ପିତାମାତା ଶପଥ ରକ୍ଷା କରି ଅବଶେଷରେ ତାକୁ ପର୍ସିଅସ୍‌ଙ୍କ ସହିତ ବିବାହ ଦିଅନ୍ତୁ ବୋଲି ଆଣ୍ଡ୍ରୋମେଡ଼ା ଜିଦ୍ କଲେ । ଏହାପରେ ଗୋଳମାଳିଆ ପରିସ୍ଥିତିରେ ରାଣୀ କାସିଓପିଆ ସୈନ୍ୟମାନଙ୍କୁ ଆଦେଶ ଦେଲେ, "ପର୍ସିଅସ୍‌କୁ ମାରି ପକାଅ ।" ପର୍ସିଅସ୍ ବଡ଼ ଯୋଦ୍ଧା । ଅନେକ ସୈନିକଙ୍କୁ ସେ ହାଣି ପକାଇଲେ । ତେବେ ଯେତେହେଲେ ସେ ଜଣେ । ବହୁ ସୈନ୍ୟ ତାଙ୍କୁ ବେଢ଼ିଯିବାରୁ ପର୍ସିଅସ୍ ମେଡ୍ୟୁସାର ମୁଣ୍ଡ କାଢ଼ି ସମସ୍ତଙ୍କୁ ଦେଖାଇ ଦେଲେ । ସମସ୍ତେ ସେଇଠି ପଥର ମୂର୍ତ୍ତି ପାଲଟିଗଲେ ।

ସେଫିଅସ୍ ଓ କାସିଓପିଆଙ୍କୁ ଦୁଇଟି ନକ୍ଷତ୍ରପୁଞ୍ଜ କରି ପୋସିଡ଼ନ୍ ଆକାଶରେ ସ୍ଥାନ ଦେଇଛନ୍ତି । ବିଶ୍ୱାସଘାତକତାର ଦଣ୍ଡ ସ୍ୱରୂପ କାସିଓପିଆଙ୍କୁ ବାନ୍ଧି ଦିଆଯାଇଛି । ବର୍ଷର କେତେ ମାସ କାସିଓପିଆ (ନକ୍ଷତ୍ରପୁଞ୍ଜ) ଓଲଟି ଯାଇ ଅବାଗିଆ ହୁଅନ୍ତି । ଆଣ୍ଡ୍ରୋମେଡ଼ାଙ୍କ ମୃତ୍ୟୁ ପରେ ଏଥେନା ତାଙ୍କୁ ଏକ ସୁନ୍ଦର ହାର ଆକାରରେ ଆକାଶରେ ଝୁଲାଇ ଦେଇଛନ୍ତି । ସେଫିଅସ୍, କାସିଓପିଆ ଓ ଆଣ୍ଡ୍ରୋମେଡ଼ା ଆକାଶରେ ତିନୋଟି ପାଖାପାଖି ନକ୍ଷତ୍ର ପୁଞ୍ଜ ।

ଆଣ୍ଡ୍ରୋମେଡ଼ାଙ୍କୁ ସାଙ୍ଗରେ ଧରି ପର୍ସିଅସ୍ ମାଆଙ୍କ ପାଖରେ ପହଞ୍ଚିଲେ । ଶୁଣିଲେ ତାଙ୍କ ଅନୁପସ୍ଥିତିରେ ଦ୍ୱୀପର ରାଜା ମାଆଙ୍କୁ ବହୁତ ହଇରାଣ କରିଛି । ରାଗରେ ସେ ରାଜାଙ୍କ ପାଖକୁ ବାହାରିଲେ । ସଙ୍ଗୀମାନଙ୍କ ସହିତ ରାଜା ମଉଜ କରୁଥାନ୍ତି । ପର୍ସିଅସ୍‌ଙ୍କୁ ଦେଖି ସମସ୍ତେ ଥଟ୍ଟା କଲେ । କାରଣ ସେ ମେଡ୍ୟୁସାର ମୁଣ୍ଡ ଧରି ଫେରୁଛନ୍ତି

ବୋଲି କିଏ ବିଶ୍ୱାସ କରିବ ? କାପୁରୁଷ ଆଦୌ ମେଡୁସା ପାଖକୁ ନ ଯାଇ ଫେରିଆସିଛୁ । ଯାଇଥିଲେ ତ ପଥର ମୂର୍ତ୍ତି ପାଲଟିଥାଆନ୍ତା ।

ପର୍ସିଅସ୍ ମେଡୁସାର ମୁଣ୍ଡ ଆଣିଛନ୍ତି କହିବାରୁ ରାଜା ତାଙ୍କୁ ଉପହାସ କରି ନାନା କଟୁକଥା କହିଲେ । ସବୁ ଶୁଣି ପର୍ସିଅସ୍ ମୁଣ୍ଡ ବାହାର କରି ଦେଖାଇଲେ । ନିମିଷକେ ସମସ୍ତେ ପଥର ।

ଶତ୍ରୁ ନାଶ ହିବା ପରେ ପର୍ସିଅସ୍ ଦେବୀ ଏଥେନାଙ୍କୁ ମେଡୁସାର ମୁଣ୍ଡ ଅର୍ପଣ କଲେ । ଏଥେନା ତାଙ୍କ ଢାଲରେ ଏହି ମୁଣ୍ଡ ଖଞ୍ଜି ଦେଇଛନ୍ତି । ଏହାଛଡ଼ା ଷ୍ଟାଇ ଜଳପରୀଙ୍କୁ ଦେଇଦେବା ପାଇଁ ହର୍ମିଜଙ୍କ ହାତରେ ସେ ଉଡ଼ନ୍ତା ଚପଲ, ଅଦୃଶ୍ୟ ଟୋପି ଓ ଥଳି ଅର୍ପଣ କରିଥିଲେ ।

ଏହାପରେ ପର୍ସିଅସ୍ ନିଜ ରାଜ୍ୟ ଆର୍‌ଗସ୍ ଅଭିମୁଖେ ଯାତ୍ରା-କଲେ । ଏ ଖବରପାଇ ତାଙ୍କର ଓ ତାଙ୍କ ଅଜାଙ୍କର ଶତ୍ରୁମାନେ ରାଜ୍ୟଛାଡ଼ି ପଳାଇଲେ । ବାଟରେ ଗୋଟିଏ ନଗରରେ କ୍ରୀଡ଼ା ପ୍ରତିଯୋଗିତା ହୋଇଥାଏ । ସେଠାକାର ରାଜା ପ୍ରତିଯୋଗିତାରେ ଯୋଗ ଦେବାକୁ ପର୍ସିଅସ୍‌କୁ ନିମନ୍ତ୍ରଣ କଲେ । ଡିସ୍‌କସ୍ ଥ୍ରୋ ପ୍ରତିଯୋଗିତାରେ ପର୍ସିଅସ୍ ଡିସ୍‌କସ୍ ଫିଙ୍ଗୁଥାନ୍ତି । ଥରେ ତାହା ବହୁଦୂର ପର୍ଯ୍ୟନ୍ତ ଯାଇ ଜଣେ ବୃଦ୍ଧଙ୍କ ଦେହରେ ବାଜିଲା ବୃଦ୍ଧ ଆସିଥିଲେ ପ୍ରତିଯୋଗିତା ଦେଖିବାକୁ । ଡିସ୍‌କସ୍ ବାଜିବାରୁ ସେଇଠି ଟଳି ପଡ଼ିଲେ । ସେ ବୃଦ୍ଧ ଆଉ କେହି ନୁହନ୍ତି; ସେ ହେଉଛନ୍ତି ପର୍ସିଅସ୍‌ଙ୍କ ଅଜା ।

ଅଜାଣତରେ ଅଜାଙ୍କୁ ମାରିଥିବାରୁ ପର୍ସିଅସ୍‌ଙ୍କର ଦୁଃଖର ସୀମା ରହିଲା ନାହିଁ । ବିଧାତାର ବିଧାନ କିଏ ଆନ କରିବ ?

ଶତ୍ରୁମାନଙ୍କୁ ନିପାତ୍ କରି ପର୍ସିଅସ୍ ଆର୍‌ଗସ୍‌କୁ ଏକ ଶକ୍ତି-ଶାଳୀ ଓ ଦୃଢ଼ ବସ୍ତୁରେ ପରିଣତ କରିଥିଲେ ।



# ଟାଣ୍ଟାଲସ୍‌ଙ୍କ ଦଣ୍ଡ

ପୁରାଣ ଯୁଗର ବୀରପୁରୁଷଙ୍କ ମଧ୍ୟରୁ ଅନେକ ଜିଅସ୍‌ଙ୍କର ମାନବ ପୁତ୍ର ବା ନାତି । ସେମାନେ ସମସ୍ତେ କୀର୍ତ୍ତିମାନ ପୁରୁଷ । ତେବେ ଟାଣ୍ଟାଲସ୍ ଏହାର ଏକ ବ୍ୟତିକ୍ରମ । ସେ ଜିଅସ୍‌ଙ୍କ ପୁତ୍ର ହେଲେ ମଧ୍ୟ ଗୋଟିଏ ବଡ଼ ଅପରାଧ କରିଥିବାରୁ ଭୟଙ୍କର ଦଣ୍ଡ ପାଇଥିଲେ ।

ଟାଣ୍ଟାଲସ୍ ଫ୍ରିଜିଅର ରାଜା । ସେ ଦେବତାମାନଙ୍କର ଅତି ଘନିଷ୍ଠ ଓ ସେମାନଙ୍କ ସହିତ ଅମୃତ ପଣୋଷ୍ଟ କରନ୍ତି । ତାଙ୍କ ବ୍ୟତୀତ ଅନ୍ୟ କୌଣସି ମନୁଷ୍ୟ ଏ ସୁଯୋଗ ପାଇ ନାହିଁ । ଥରେ ଟାଣ୍ଟାଲସ୍ ଦେବତାମାନଙ୍କୁ ନିମନ୍ତ୍ରଣ କଲେ । ଖାଦ୍ୟ ନିଅଣ୍ଟ ପଡ଼ିବା ପାଇଁ ହେଉ ବା ଦେବତାମାନେ ସର୍ବଜ୍ଞ କି ନା ପରୀକ୍ଷା କରିବା ପାଇଁ ହେଉ, ଟାଣ୍ଟାଲସ୍ ନିଜ ପୁଅ ପିଲପ୍‌ସଙ୍କୁ ମାରି ତା ମାଂସ ରାନ୍ଧି ସେମାନଙ୍କୁ ପରଷିଥିଲେ ।

ଏକଥା ଜାଣିପାରି ଜିଅସ୍ ପିଲପ୍‌ସଙ୍କୁ ଜୀବନ୍ୟାସ ଦେଇଥିଲେ । ପରେ ପିଲପ୍‌ସ ହେଲେ ଜଣେ ବିଖ୍ୟାତ ରାଜା । ଟାଣ୍ଟାଲସ୍‌ଙ୍କର ଏତେବଡ଼ ଅପରାଧକୁ ଜିଅସ୍ କ୍ଷମା କରି ଦେଲେ । ମାତ୍ର ଥରେ କ୍ଷମା ପାଇ ମଧ୍ୟ ତାଙ୍କର ଚେତା ପଶିଲା ନାହିଁ । ସେ ଆଉରି ଏକ ଗୁରୁତର ଅପରାଧ କରିବସିଲେ । ଥରେ ସେ ଅମୃତ ଚୋରାଇ ଆଣି ତାଙ୍କର ବନ୍ଧୁମାନଙ୍କୁ ଚଖାଇଲେ । ମଣିଷକୁ ଅମୃତ ଦେବା ଅକ୍ଷମଣୀୟ

ଅପରାଧ । କ୍ରୋଧରେ ଜିଅସ୍ ଟାଣ୍ଟାଲସ୍‌ଙ୍କୁ ନିଜେ ବଧ କରି ଯମାଳୟରେ ତାଙ୍କ ପାଇଁ ଭୟଙ୍କର ଦଣ୍ଡର ବ୍ୟବସ୍ଥା କରିଥିଲେ । ଦଣ୍ଡଟି ଏହିପରି—

ଗୋଟିଏ ବଡ଼ ଜଳାଶୟରେ ଟାଣ୍ଟାଲସ୍ ଗଳାଏ ପାଣିରେ ବୁଡ଼ି ରହିଥାନ୍ତି । ପାଣିର ଲହର ତାଙ୍କ ଓଠ ଛୁଉଁଥାଏ । କିନ୍ତୁ ସେ ଟୋପାଏ ପାଣି ପିଇବା ସମ୍ଭବ ହୁଏନାହିଁ । କୂଳରେ ଥିବା ଫଳନ୍ତା ଗଛର ଡାଳ ପାଣିଉପରକୁ ନଇଁ ଆସିଥାଏ । ପେନ୍ଥା ପେନ୍ଥା ସୁସ୍ୱାଦୁ ଫଳ ଟାଣ୍ଟାଲସ୍‌ଙ୍କ ପାଟି ପାଖରେ ଲଟକିଥାଏ । ଖାଇବା ପାଇଁ ପାଟି ବଢ଼ାଇଲେ ପବନ ଫଳପେନ୍ଥାକୁ ଦୋହଲାଇ ଦିଏ । ପାଣି ଭିତରେ ବୁଡ଼ିରହି, ପାଟି ପାଖରେ ଖାଦ୍ୟ ଥାଇ ଟାଣ୍ଟାଲସ୍ ଭୋକଶୋଷରେ ଛଟପଟ ହେଉଥାନ୍ତି । ଏ ଦଣ୍ଡ ଯଥେଷ୍ଟ ନ ହେଲା ପରି ତାଙ୍କ ମୁଣ୍ଡଉପରେ ଝୁଲୁଥିବା ଗୋଟିଏ ବିରାଟ ପଥର ଯେ କୌଣସି ମୁହୂର୍ତ୍ତରେ ଖସିବ ଖସିବ ହୋଇ ତାଙ୍କୁ ଡରାଉଥାଏ ।

ମୃତ୍ୟୁଲୋକରେ ଅନନ୍ତ କାଳପାଇଁ ଟାଣ୍ଟାଲସ୍ ଏହିପରି ଯନ୍ତ୍ରଣା ଭୋଗୁଛନ୍ତି । କଠୋର ଦଣ୍ଡ ଅବିଷ୍କାର କରିବାରେ ଦେବତାମାନଙ୍କର କି ଅଦ୍ଭୁତ ପ୍ରତିଭା !



# ପିଲପ୍ସ ଓ ହିପୋଡ଼ାମିଆ

ଟାଣ୍ଟାଲସ୍‌ଙ୍କ ପୁତ୍ର ପିଲପ୍ସ କମ୍ ବୟସରେ ପିତାଙ୍କୁ ହରାଇ ଅନେକ ହଇରାଣ ହୋଇଥିଲେ । ଶତ୍ରୁମାନେ ତାଙ୍କୁ ରାଜ୍ୟରୁ ତଡ଼ ଦେଲେ । ନିଜର ଆଉ ଗୋଟିଏ ରାଜ୍ୟ କରିବା ପାଇଁ ସେ ଅନେକ ଆଡ଼େ ଘୂରି ବୁଲି ଏଲିସ୍‌ରେ ପହଞ୍ଚିଲେ । ସେ ନଗରକୁ ଆସିବାରେ ତାଙ୍କର ଗୋଟିଏ ଉଦ୍ଦେଶ୍ୟ ଥାଏ । କଥା ହେଉଛି, ସେଠାକାର ରାଜା ଇନମାଅସ୍ ତାଙ୍କର ସୁନ୍ଦରୀ କନ୍ୟା ହିପୋଡ଼ାମିଆକୁ ବିବାହ ଦେବା ପାଇଁ ଗୋଟିଏ ପଣ କରିଥାନ୍ତି । ଯେଉଁ ବୀର ତାଙ୍କୁ ରଥ ଦୌଡ଼ରେ ପରାସ୍ତ କରିବ, ସେଇ ହେବ ତାଙ୍କର ଜାମାତା ।

ଇନମାଅସ୍ ଯୁଦ୍ଧର ଦେବତା ଏରିଜ୍‌ଙ୍କର ପୁତ୍ର । ପିତାଙ୍କଠାରୁ ସେ ଦୁଇଟି ବେଗବାନ୍ ଦେବଅଶ୍ୱ ପାଇଥିବାରୁ ରଥଦୌଡ଼ରେ ଅପରାଜେୟ ହୋଇଥାନ୍ତି । ଝିଅକୁ ବିବାହ ଦେବାପାଇଁ ସେ ଏପରି ପଣ କରିବାର ଗୋଟିଏ କାରଣ ଅଛି । ଭବିଷ୍ୟବାଣୀ ଥିଲା ଯେ ଇନମାଅସ୍ ତାଙ୍କ ଜ୍ୱାଇଁ ହାତରେ ମରିବେ ତେଣୁ ଝିଅ କଏରି ବିବାହ କରି ନ ପାରିବ ସେଥିପାଇଁ ସେ ଏହିପରି ଏକ ଅସମ୍ଭବ ପଣ ରଖିଥାନ୍ତି । ପଣ ହେଉଛି ରଥଦୌଡ଼ରେ ଜିଣିଲେ କନ୍ୟାଲାଭ, ହାରିଲେ ମୁଣ୍ଡକାଟ । କେବଳ କନ୍ୟାଲାଭ ନୁହେଁ, ରାଜ୍ୟଲାଭ ମଧ୍ୟ । କାରଣ ରାଜା ପଣ କରିଥାନ୍ତି ସେ ହାରିଲେ ଆତ୍ମହତ୍ୟା କରିବେ । ପିଲପ୍ସ ଦେଖିଲେ, ଏରିଜ୍‌ଙ୍କ

ସୂଙ୍କୁ ରଥଦୌଡ଼ରେ ହରାଇବା ବଡ଼ କଠିନ କଥା । ପୁଣି ଇନମାଅସ୍‌ଙ୍କ ସାରଥି ମିର୍‌ଥିଲସ୍ ଜଣେ ଦେବତାଙ୍କ ପୁତ୍ର । ସାରଥି ସ୍ୱଭାବରେ ସେ ଅତି ବିଚକ୍ଷଣ । ତାଙ୍କୁ ପ୍ରତିଯୋଗିତାରେ ବିଜୟୀ ହେଲା ପରି ରଥ ପ୍ରଦାନ କରିବାକୁ ପିଲପ୍‌ସ ପୋସିଡ଼େନ୍‌ଙ୍କୁ ପ୍ରାର୍ଥନା କଲେ । ପୋସିଡ଼େନ୍ ଅଶ୍ୱମାନଙ୍କର ପ୍ରଭୁ । ଇନମାଅସ୍ ଗର୍ବ କରି କହୁଥାନ୍ତି ଯେ ସେ ମଣିଷ ଖପୁରୀର ଗୋଟିଏ ସ୍ତୂପ କରିଦେବେ । ତାଙ୍କର ଏ ଗର୍ବକୁ ଖର୍ବ କରିବାକୁ ଦେବତାମାନେ ସ୍ଥିର କରିଥାନ୍ତି । ତେଣୁ ପୋସିଡ଼େନ୍ ସନ୍ତୁଷ୍ଟ ହୋଇ ପିଲପ୍‌ସଙ୍କୁ ଗୋଟିଏ ସୁବର୍ଣ୍ଣର ରଥ ଦେଲେ । ଏଥିରେ ଉଡ଼ନ୍ତା ଦେବ ଅଶ୍ୱ ଯୋଚ୍ଚ ହୋଇଥାନ୍ତି । ନିମିଷକେ ସେମାନେ ତ୍ରିଭୁବନ ଭ୍ରମି ପାରନ୍ତି ।

ରଥକୁ ପରୀକ୍ଷା କରିବା ପାଇଁ ପିଲପ୍‌ସ ଗୋଟିଏ ଦୂର ସ୍ଥାନକୁ ବାହାରିଲେ । ମୁହୂର୍ତ୍ତକରେ ସେହି ଅଜର, ଅମର ଅଶ୍ୱମାନେ ତାଙ୍କୁ ସମୁଦ୍ର ଉପରେ ଟାଣିନେଇ ଲକ୍ଷ୍ୟ ସ୍ଥଳରେ ପହଞ୍ଚାଇ ଦେଲେ । ରଥ ଚକରେ ପାଣି ମଧ୍ୟ ଲାଗିଲା ନାହିଁ । ରଥର ସେପରି ଅସମ୍ଭବ ବେଗ ସହି ନ ପାରି ପିଲପ୍‌ସଙ୍କ ସାରଥିର ମୃତ୍ୟୁ ହେଲା ।

ଏପରି ଅଲୌକିକ ରଥ ପାଇ ମଧ୍ୟ ଇନମାଅସ୍‌ଙ୍କ ପ୍ରାସାଦ ପାଖରେ ପହଞ୍ଚି ପିଲପ୍‌ସ ଡରିଗଲେ । ପୂର୍ବରୁ ପରାଜିତ ତେରଜଣ ବୀର ରାଜପୁତ୍ରଙ୍କୁ କଟାମୁଣ୍ଡ ପ୍ରାସାଦ ଆଗରେ ଟଙ୍ଗା ହୋଇଥିବାର ଦେଖିଲେ କିଏ ନଡ଼ରିବ ? ପିଲପ୍‌ସ ଇନମାଅସ୍‌ଙ୍କ ସାରଥି ମିର୍‌ଥିଲସ୍‌ଙ୍କ ହାତ କରିବାକୁ ଚେଷ୍ଟା କଲେ । ହିପୋଡ଼ାମିଆଙ୍କୁ ବିବାହ କରିବାକୁ ମିର୍‌ଥିଲସ୍‌ଙ୍କର ମଧ୍ୟ ଇଚ୍ଛା ଥାଏ । କିନ୍ତୁ ରାଜାଙ୍କ ଭୟରେ ସେ ପ୍ରତିଯୋଗିତାରେ ଭାଗ ନେଇ ପାରୁ ନଥାନ୍ତି । ତେଣୁ ରାଜାଙ୍କ ଉପରେ ତାଙ୍କର ରାଗ । ପିଲପ୍‌ସ ପ୍ରତିଶ୍ରୁତି ଦେଲେ ଯେ ରଥ ଦୌଡ଼ରେ ଜିଣିଲେ ସେ ମିର୍‌ଥିଲସ୍‌ଙ୍କୁ ରାଜ୍ୟରୁ ଅଧେ ଦେଇଦେବେ । ମିର୍‌ଥିଲସ୍ ରାଜାଙ୍କ ରଥ ଚକର ଅଖ କାଢ଼ି ନେଇ

ମହମର ଅଖ ଲଗାଇ ଦେଲେ । ଫଳରେ ପ୍ରତିଯୋଗିତା ମଝିରେ ତାଙ୍କ ରଥ ଭାଙ୍ଗିଲା ଓ ରାଜା ସେଇ ଦୁର୍ଘଟଣାରେ ମଲେ ।

ପିଲପ୍ସ ଅବଶ୍ୟ ନିଜ କଥା ରକ୍ଷା କଲାପରି ନିର୍ବୋଧ ନୁହନ୍ତି । ଦିନେ ପିଲପ୍ସ, ହିପୋଡାମିଆ ଓ ମିର୍ଥିଲସ୍ ଜାହାଜରେ ବସି ସମୁଦ୍ର ଭିତରେ ବୁଲୁଥାନ୍ତି । ପିଲପ୍ସ କୌଶଳରେ ମିର୍ଥିଲସ୍‌ଙ୍କୁ ସମୁଦ୍ର ମଝିକୁ ଠେଲିଦେଲେ । ମିର୍ଥିଲସ୍‌ଙ୍କ ସ୍ମୃତି ରକ୍ଷା କରି ତାଙ୍କର ପିତା ହର୍ମିଜ୍ ଆକାଶରେ ରଥ ଆକାରରେ ନକ୍ଷତ୍ରପୁଞ୍ଜ ଗଢ଼ି ମିର୍ଥିଲସ୍‌ଙ୍କ ନାମରେ ନାମିତ କରିଛନ୍ତି । ଯେଉଁ ସମୁଦ୍ରରେ ତାଙ୍କର ମୃତ୍ୟୁ ହେଲା, ସେ ସମୁଦ୍ରର ନାମ ମିର୍ଥିଲସ୍ ସାଗର ରହିଛି । ହର୍ମିଜ୍ ଦେବଙ୍କୁ ଶାନ୍ତ କରିବାକୁ ପିଲପ୍ସ ତାଙ୍କର ଏକ ବଡ଼ ମନ୍ଦିର ତୋଳାଇଥିଲେ ।

ବୁଦ୍ଧି, ବୀରତ୍ୱ ଓ ସାହାସ ବଳରେ ପିଲପ୍ସ ଅନେକ ନଗରୀ ଜୟକରି ଗୋଟିଏ ସାମ୍ରାଜ୍ୟ ପ୍ରତିଷ୍ଠା କରିଥିଲେ । ତାଙ୍କ ନାମାନୁସାରେ ଏହି ସାମ୍ରାଜ୍ୟର ନାମକରଣ ହୋଇଥିଲା ପିଲୋପନେସିଅସ୍—ଅର୍ଥାତ୍ ପିଲପ୍ସଙ୍କ ଦ୍ୱୀପ । ଏଲିସ୍, ଆର୍ଗସ୍ ଓ ସ୍ପାର୍ଟା ପରି ବିଶିଷ୍ଟ ନଗରରାଷ୍ଟ୍ରମାନେ ପିଲୋପନେସିଅସ୍‌ର ଅନ୍ତର୍ଗତ ।

ପିଲପ୍ସଙ୍କ ଝିଅ ଆର୍ଗସ୍‌ର ବିଖ୍ୟାତ ରାଜା ପର୍ସିଅସ୍‌ଙ୍କ ପୁଅକୁ ବିବାହ କରିଥିଲେ ।



# ଦେବତା ଅସୁର ଯୁଦ୍ଧ

ଜିଅସ୍ ଟିଟାନ୍‌ମାନଙ୍କୁ ପରାସ୍ତ କରି ପାତାଳର ଏକ ଦୁର୍ଗମ ଅଞ୍ଚଳ (ଟାର୍ଟାରସ) ରେ ବନ୍ଦୀ କରି ରଖିଲେ । ଏହି କାରଣରୁ ଅସୁର-ମାନେ ଉତ୍ତ୍ୟକ୍ତ ହେଲେ । ଅସୁରମାନେ ଟିଟାନ୍‌ଙ୍କ ଭାଇ । ସେମାନେ ଧରଣୀ ମାତାଙ୍କ ସନ୍ତାନ । ଅସୁରଙ୍କ ସଂଖ୍ୟା ଚବିଶ ।

ସ୍ୱର୍ଗ ଆକ୍ରମଣ କରିବାକୁ ମସୁଧା କରି ଅସୁରମାନେ ପର୍ବତ ଶୃଙ୍ଗ ଉପରୁ ଅଲିମ୍ପସ୍‌କୁ ଲକ୍ଷ୍ୟକରି ବଡ଼ ବଡ଼ ପଥର ଫିଙ୍ଗିଲେ । ଅଲିମ୍ପସ୍-ରେ ଆତଙ୍କ ଖେଳିଗଲା । ଦେବୀ ହେରା କହିଲେ, ସିଂହଚର୍ମଧାରୀ ଜଣେ ମନୁଷ୍ୟର ସାହାଯ୍ୟ ନପାଇଲେ ଦେବତାମାନେ ଅସୁରଙ୍କର କୌଣସି କ୍ଷତି କରି ପାରିବେ ନାହିଁ । ମହାବୀର ହେରେକ୍ଲିଜ୍ ସେହି ବ୍ୟକ୍ତି । ହେରେକ୍ଲିଜ୍ ମର୍ତ୍ତ୍ୟରମଣୀର ପୁତ୍ର ହୋଇଥିବାରୁ ତାଙ୍କ ଉପରେ ହେରାଙ୍କର ଖୁବ୍ ରାଗ । ଅସୁରଙ୍କ ହାତରେ ହେରେକ୍ଲିଜ୍‌ଙ୍କୁ ମାରିବାକୁ ଏହା ଏକ ଷଡଯନ୍ତ୍ର ନୁହେଁ ତ ? ଜିଅସ୍ ସବୁ କଥା ବୁଝାଇ ଏଥେନାଙ୍କ ହାତରେ ହେରେକ୍ଲିଜ୍‌ଙ୍କ ପାଖକୁ ଖବର ପଠାଇଲେ ।

ହେରେକ୍ଲିଜ୍ ଯୁଦ୍ଧକୁ ଆସିଲେ । ଦେବତା ଓ ଅସୁରଙ୍କ ମଧ୍ୟରେ ଘୋର ଯୁଦ୍ଧ ଲାଗିଲା । ଅସୁରଙ୍କ ସେନାପତିଙ୍କୁ ଲକ୍ଷ୍ୟକରି ହେରେକ୍ଲିଜ୍ ଶର ବର୍ଷିଲେ । ସେଇ ଶରାଘାତରେ ସେନାପତି ଟଳି ପଡ଼ିଲା । ମାତ୍ର ପରମୁହୂର୍ତ୍ତରେ ଝାଡ଼ ଝୁଡ଼ ହୋଇ ଛିଡ଼ାହେଲା । ଦେବୀ ଏଥେନା ଚିତ୍କାର

କହିଲେ, "ହେରେକ୍ଲଜ୍ ଅବଳମ୍ୱେ ରାକ୍ଷସକୁ ଏ ରାଜ୍ୟର ସୀମା ପାର କର । ଅସୁର ତାର ଜନ୍ମଭୂମିରେ ମରିବ ନାହିଁ ।" ଏହା ଶୁଣି ହେରେକ୍ଲଜ୍ ଅସୁରକୁ ଘୋଷାଡ଼ି ଘୋଷାଡ଼ି ଆଉ ଗୋଟିଏ ରାଜ୍ୟକୁ ନେଇଗଲେ ଓ ଗଦା ପ୍ରହାରରେ ତାର ପ୍ରାଣ ନେଲେ ।

ହେରେକ୍ଲଜ୍‌ଙ୍କ ଅନୁପସ୍ଥିତିରେ ପ୍ରଫେରିଅନ୍ ନାମକ ଜଣେ ଦୁର୍ଦ୍ଦାନ୍ତ ରାକ୍ଷସ ଗୋଟିଏ ପଥରର ପିରାମିଡ଼୍ (ଯାହାକୁ ରାକ୍ଷସମାନେ ଗଢ଼ିଥିଲେ) ଉପରୁ ଅଲମ୍ପସ୍‌କୁ ଲମ୍ଫ ଦେଲା । କୌଣସି ଦେବତା ଏହି ରାକ୍ଷସର ସମ୍ମୁଖୀନ ହୋଇ ପାରିଲେ ନାହିଁ । କେବଳ ଏଥେନା ଏକାକୀ ରାକ୍ଷସର ବାଟ ଓଗାଳି ଲଢ଼ିଥିଲେ । ରାକ୍ଷସ ଧାଇଁଯାଇ ଦେବୀ ହେରାଙ୍କୁ ଧରିଲା । ତାଙ୍କ ସ୍ତ୍ରୀ ପ୍ରତି ଏପରି ଦୁର୍ବ୍ୟବହାର ଦେଖି ଜିଅସ୍ କ୍ରୋଧରେ ବଜ୍ରାଘାତ କଲେ । ଜିଅସ୍ ଓ ରାକ୍ଷସ ଯୁଦ୍ଧ କରୁ କରୁ ହେରେକ୍ଲଜ୍ ପହଞ୍ଚି ଗଲେ ଓ ଶର ବିଦ୍ଧ ରାକ୍ଷସର ପ୍ରାଣ ନେଲେ ।

ଏଫିଏଲ୍‌ଟିଜ୍ ନାମକ ଜଣେ ରାକ୍ଷସ ସହିତ ଲଢ଼ି ଏରିଜ୍ କ୍ଲାନ୍ତ ହୋଇଗଲେ । ସେ ବାରମ୍ବାର ପରାଜିତ ହେଉଛନ୍ତି ଦେଖି ଆପୋଲୋ ଅସ୍ତ୍ରାଘାତରେ ରାକ୍ଷସର ବାମ ଚକ୍ଷୁ ଫୁଟାଇ ସାହାଯ୍ୟ ପାଇଁ ହେରେକ୍ଲଜ୍‌ଙ୍କୁ ଡ଼ାକଦେଲେ । ହେରେକ୍ଲଜ୍‌ଙ୍କ ବାଣ ରାକ୍ଷସର ଡ଼ାହାଣ ଆଖିରେ ଗଳିଗଲା ।

ରାକ୍ଷସଙ୍କ ସହିତ ଲଢ଼େଇରେ ଯେତେବେଳେ ଯେଉଁ ଦେବତା ଅସୁବିଧାରେ ପଡ଼ୁଛନ୍ତି, ତାଙ୍କୁ ସାହାଯ୍ୟ କରିବାକୁ ସେତେବେଳେ ହେରେକ୍ଲଜ୍ ଆଗେଇ ଯାଉଛନ୍ତି । ହେରେକ୍ଲଜ୍‌ହିଁ ଅଧିକାଂଶ ଅସୁରଙ୍କୁ ବଧ କରିଥିଲେ । ଡାଇଓନିସସ୍ ୟୁରିଟସ୍ ରାକ୍ଷସକୁ ଘାଏଲା କଲା ପରେ ହେରେକ୍ଲଜ୍ ତାକୁ ମାରିଲେ । ହେକ୍ଟିଆ କ୍ଲାଇଟସ୍‌କୁ ଆଘାତ କରିବାରୁ ସେ ତାଙ୍କ ଉପରେ ପ୍ରତିଆକ୍ରମଣ କଲା । ସେତେବେଳେ ହେରେକ୍ଲଜ୍ ରାକ୍ଷସ ସାମନାକୁ ଆସି ତାକୁ ବଧ କଲେ ।

ଅନେକ ରାକ୍ଷସଙ୍କ ନାଶ ହେବାରୁ ଅନ୍ୟମାନେ ହତାଶ ହୋଇ ପଳାଇଲେ । ଏଥେନା ଏନଭାଲସ୍ ନାମକ ରାକ୍ଷସକୁ ଲକ୍ଷକରି ଗୋଟିଏ କ୍ଷେପଣାସ୍ତ୍ର ଫିଙ୍ଗିଲେ । ଆଘାତ ପାଇ ରାକ୍ଷସ ଯେଉଁଠି ମରି-ପଡ଼ିଲା ସେ ସ୍ଥାନର ନାମ ସିସିଲି ଦ୍ୱୀପ ହୋଇଛି ।

ଅନ୍ୟ ରାକ୍ଷସମାନଙ୍କୁ ଦେବତାମାନେ ଗୋଡ଼େଇ ଗୋଡ଼େଇ ମାରିଲେ । ଆନେକଙ୍କର ପ୍ରାଣନାଶ ହେରାକ୍ଲିଜ୍ଙ୍କ ହାତରେ ହୋଇଥିଲା ।



# ଦାନବ ଶ୍ରେଷ୍ଠ ଟାଇଫୁନ୍

ଅସୁରମାନେ ଧରଣୀ ମାତାଙ୍କ ପୁତ୍ର । ସେମାନଙ୍କ ନିଧନ ଦେଖି ଧରଣୀମାତା କୁପିତ ହେଲେ ଓ ଗୋଟିଏ ମହାନ ଦାନବ ଜନ୍ମ ଦେବାକୁ ସ୍ଥିର କଲେ । ଧରଣୀ ମାତାଙ୍କ ଏହି ସିଦ୍ଧାନ୍ତରୁ ଜନ୍ମ ନେଲେ ଟାଇଫୁନ୍ —ତାଙ୍କର ସବା ସାନ ପୁଅ ।

ଟାଇଫୁନ୍ଙ୍କ ଅଣ୍ଟାତଳ ସାପ ପରି । ଅଣ୍ଟା ପର୍ଯ୍ୟନ୍ତ ଗୁଡ଼େଇ ହୋଇଥିବା ସାପ ଅଂଶଟି ପାହାଡ଼ ଉଚ୍ଚର । ଦୁଇ ବାହୁକୁ ଲମ୍ବେଇ ଦେଲେ ତାହା ଦୁଇପଟେ ଶହେ କୋଶ ପର୍ଯ୍ୟନ୍ତ ଲମ୍ବିଯାଏ । ହାତ ସ୍ଥାନରେ ଫଣା ଟେକିଥିବା ଶହ ଶହ ସାପ ମୁଣ୍ଡ । ନିଜ ମୁଣ୍ଡଟି ଆକାରରେ ଗଧ ମୁଣ୍ଡ ପରି । ମଥା ଆକାଶକୁ ଛୁଏଁ । ଆଖିରୁ ନିଆଁ ଓ ପାଟି ଭିତରୁ ନାଲ୍ ଟକ୍ ଟକ୍ ଗରମ ପଥର ଖଣ୍ଡ ବାହାରୁଥାଏ ।

ଟାଇଫୁନ୍ ଯେତେବେଳେ ଅଲିମ୍ପସ୍ ଆଡ଼କୁ ମାଡ଼ି ଆସିଲା, ଦେବତାମାନେ ଭୟରେ ପଶୁରୂପ ଧରି ମିଶର ପଳାଇଲେ । ଅପୋଲୋ କାଉ, ଡାଇଓନିସସ୍ ଛେଳି, ହେରା ଗୋଟିଏ ଧଳା ଗାଈ, ଆର୍ଟେମିସ୍ ବିରାଡ଼ି, ଆଫ୍ରୋଡାଇଟ୍ ମାଛ, ଜିଅସ୍ ମେଣ୍ଢା, ଓ ଏହିପରି ଅନ୍ୟମାନେ ବିଭିନ୍ନ ପଶୁଙ୍କ ରୂପରେ ଆତ୍ମଗୋପନ କଲେ । ପ୍ରାଚୀନ ମିଶରରେ ଦେବତାମାନଙ୍କୁ ପଶୁ ରୂପରେ ପୂଜା କରାଯାଉଥିଲା ।

ଦେବତାମାନେ ଅଲମ୍ପସ୍‌ରୁ ପଳାଇଲା ବେଳେ ଏକୁଟିଆ ଏଥେନା ଆତ୍ମଗୋପନ ନ କରି ରହିଥାନ୍ତି । ଜିଅସ୍‌ଙ୍କ ଶତ୍ରୁତା ଯୋଗୁ ସେ ତାଙ୍କୁ କୂଟକଥା କହିବା ଫଳରେ ଜିଅସ୍ ନିଜ ରୂପ ଧରି ଟାଇଫୁନ୍‌କୁ ବଜ୍ରାଘାତ କଲେ । ତା'ପରେ ଖଡ୍‌ଗରେ ଅସୁରକୁ ପ୍ରହାର କଲେ । ଘାଏଲ ହୋଇ ଟାଇଫୁନ୍‌କୁ ବିକଟାଳ ଚିତ୍କାର କରି ସିସିଲିର ଗୋଟିଏ ପର୍ବତକୁ ପଳାଇଲା । ଜିଅସ୍ ଅସୁର ପଛରେ ଧାଇଁ ତାକୁ ସେଠାରେ ହାବୁଡ଼ିଲେ । ଦୁହିଁଙ୍କ ମଧ୍ୟରେ ଘୋର ଯୁଦ୍ଧ ଲାଗିଲା ।

ଟାଇଫୁନ୍ ଜିଅସ୍‌ଙ୍କୁ ତାର ବାସୁକୀ ପରି ଲାଞ୍ଜରେ ଅନେକ ପରସ୍ତ କରି ବାନ୍ଧି ପକାଇଲା । ତାଙ୍କ ହାତରୁ ଅସ୍ତ୍ରଶସ୍ତ୍ର ଛଡ଼ାଇ ନେଇ ଗୋଟିଏ ସ୍ଥାନରେ ଲୁଚାଇ ଭଉଣୀକୁ ଜଗୁଆଳି ରଖିଲା । ଜିଅସ୍ ଅମର । କିନ୍ତୁ ବନ୍ଦୀ ହୋଇ ସେ ନିରୁପାୟ ଭାବେ ପଡ଼ି ରହିଲେ ।

ଜିଅସ୍ ପରାଜିତ ହେବା ଖବର ପାଇ ଦେବତାଙ୍କ ମଧ୍ୟରେ ନୈରାଶ୍ୟ ଖେଳିଗଲା । କୂଟକପଟ ଓ ଚୌର୍ଯ୍ୟ ବିଦ୍ୟାରେ ଧୂରନ୍ଧର ହର୍ମିଜ୍ ଓ ପାନ୍ ଜିଅସ୍‌ଙ୍କୁ ଉଦ୍ଧାର କରିବାକୁ ବାହାରିଲେ । ଗୋଟିଏ ଗୁମ୍ଫା ଭିତରେ ଜିଅସ୍ ବନ୍ଦୀ ହୋଇ ଥାଆନ୍ତି । ଦୁଆର ମୁହଁରେ ଅସୁରୁଣୀ ବସିଥାଏ । ପାନ୍ ଅସୁରୁଣୀକୁ ଚମକେଇ ଚମକେଇ ଦେଲା ପରି ଗୋଟାଏ ଭୟଙ୍କର ଶବ୍ଦ କଲେ । ଅସୁରୁଣୀ ଚମକି ପଡ଼ି ଚାରିଆଡ଼କୁ ଚାହିଁ ଥିବାର ସୁଯୋଗ ନେଇ ହର୍ମିଜ୍ ଜିଅସ୍‌ଙ୍କ ଅସ୍ତ୍ରଶସ୍ତ୍ର ଉଦ୍ଧାର କରି ତାଙ୍କ ହାତରେ ଧରାଇ ଦେଲେ ।

ଜିଅସ୍ ଅଲମ୍ପସ୍ ଫେରିଲେ । ଅସ୍ତ୍ରଶସ୍ତ୍ର ସଜ୍ଜିତ ଭଲ ଭାବେ ପ୍ରସ୍ତୁତ ହେଲେ ଓ ଉଡ଼ନ୍ତା ଅଶ୍ୱ ଯୋଚା ଯାଇଥିବା ଗୋଟିଏ ରଥରେ ବସି ଅସୁର ସହିତ ଯୁଦ୍ଧ କରିବାକୁ ବାହାରିଲେ । ତିନି ଭାଗ୍ୟଦେବୀ ଅସୁରର ମନ ଭୁଲେଇ ତାକୁ କଞ୍ଚା ଫଳରସ ପିଆଇ ଦେଲେ । ଏହି ଫଳରସ ପିଇବା ଦ୍ୱାରା ଅସୁର ପୂର୍ବବଳ ଫେରି ପାଇବ ବୋଲି ତାକୁ ବୁଝାଗଲା ମାତ୍ର ଏହି ଫଳରସ ପାନ ତା ପକ୍ଷରେ ବିଷପାନ ସହିତ ସମାନ ଥିଲା ।

ଥ୍ରେସ୍ ନିକଟରେ ଗୋଟିଏ ବଡ଼ ପାହାଡ଼କୁ ଉପାଡ଼ି ଅସୁର ଜିଅସ୍‌ଙ୍କ ଉପରକୁ ଫିଙ୍ଗିଲା । ଜିଅସ୍ ବଜ୍ର ଦ୍ୱାରା ତା'ର ପ୍ରତିରୋଧ କଲେ । ତାଙ୍କ ବଜ୍ରରେ ବାଜି ପାହାଡ଼ ଓଲଟିପଡ଼ି ଅସୁର ଦେହରେ ପିଟି ହେଲା । ସେଇ ଆଘାତରେ ଭୟଙ୍କର ଭାବେ କ୍ଷତବିକ୍ଷତ ହୋଇ ଅସୁର ପଳାଇଲା । ଜିଅସ୍ ତାକୁ ଗୋଡ଼ାଇ ତା ଉପରକୁ ଆଉ ଗୋଟାଏ ପାହାଡ଼ ଫିଙ୍ଗିଲେ । ଅସୁର ମରି ପଡ଼ିଲା ।

ଟାଇଫୁନ୍ ସ୍ତ୍ରୀର ନାମ ଏକିଡ଼ନା । ଏ ଅସୁରୁଣୀର ଅର୍ଦ୍ଧାଂଶ ସୁନ୍ଦରୀ ନାରୀ, ବାକି ଅର୍ଦ୍ଧାଂଶ ସର୍ପ । ଟାଇଫୁନ୍‌ର ସନ୍ତାନମାନେ ଯେପରି ଭୟଙ୍କର ଓ ବିଚିତ୍ର, ସେହିପରି ବିଖ୍ୟାତ ମଧ୍ୟ । ତିନିମୁଣ୍ଡିଆ ଭୟଙ୍କର ଡାହାଳ ସର୍ବିରସ୍, ବହୁମୁଣ୍ଡିଆ ଜଳଚର ସର୍ପ ହାଇଡ୍ରା, ନାକ ବାଟେ ଅଗ୍ନି ନିର୍ଗତ ହେଉଥିବା ଛାଗଳରୂପୀ ରାକ୍ଷସ କିମିରା (Chimera) ଓ ଦୁଇମୁଣ୍ଡିଆ ଡାହାଳ-ଅସୁର ଅର୍ଥରସ୍ ଟାଇଫୁନ୍‌ର ସନ୍ତାନ ।

ସର୍ବିରସ୍ ମୃତ୍ୟୁଦେବତା ହେଡ଼ିଜ୍ ଦ୍ୱାର ପାଖରେ ଜଗିଥାଏ । ତାର ତିନୋଟି ମୁଣ୍ଡ, ଘୋଡ଼ାପରି କେଶର ଓ ସାପର ଲାଞ୍ଜ । ସର୍ବିରସ୍‌କୁ ସନ୍ତୁଷ୍ଟ କରିବାକୁ ଗ୍ରୀସ୍‌ରେ ଶବ ପାଖରେ କିଛି ମିଷ୍ଟାନ୍ନ ରଖି କବର ଦିଆଯାଏ ।

କିମିରା ରାକ୍ଷସର ମୁଣ୍ଡଟି ସିଂହର ମୁଣ୍ଡ, ଗଣ୍ଡିର ନିମାର୍ଦ୍ଧଟି ସାପ ପରି ଓ ବାକିତକ ଶରୀର ଛେଳି ପରି । ତିନି ପ୍ରାଣୀର ସମ୍ମିଶ୍ରଣରେ ଗଠିତ ଏହି ବିଚିତ୍ର ପ୍ରାଣୀଟି ବଡ଼ ଭୟଙ୍କର ।

ଟାଇଫୁନ୍‌ର ନାତୁଣୀ ଓ ଅର୍ଥରସ ଝିଅ ସ୍ଫିଙ୍କ୍ସ (Sphinx) ଗ୍ରୀକ୍ ପୁରାଣରେ ସୁପରିଚିତ । କେତେକଙ୍କ ମତରେ ସେ ଟାଇଫୁନ୍‌ର ନାତୁଣୀ ନୁହେଁ, ଝିଅ । ସ୍ଫିଙ୍କ୍ସର ଶରୀର ଚାରୋଟି ପ୍ରାଣୀର ସମ୍ମିଶ୍ରଣରେ ଗଢ଼ା । ତା'ର ମାନବୀ ମୁଣ୍ଡ, ସିଂହର ଶରୀର, ସାପର ଲାଞ୍ଜ ଓ ଇଗଲ୍‌ର ଡେଣା । ଗୋଟିଏ ପାହାଡ଼ରେ ବସି ଏହି ଉଦ୍ଭଟ

ସିଂହରାକ୍ଷସୀ ବାଟୋଇମାନଙ୍କୁ ଗୋଟିଏ ପ୍ରଶ୍ନ ପଚାରୁଥାଏ । କେହି ତା ପ୍ରଶ୍ନର ଉତ୍ତର ଦେଇ ନ ପାରି ଅସୁରୁଣୀର ଖାଦ୍ୟ ହୁଅନ୍ତି ।

ଅସୁରୁଣୀର ପ୍ରଶ୍ନ ହେଉଛି, କେଉଁ ପ୍ରାଣୀ କିଛିକାଳ ତିନୋଟି ଓ କିଛି କାଳ ଚାରୋଟି ପାଦରେ ଚାଲେ ? ପାଦ ସଂଖ୍ୟା ଅଧିକ ହୋଇ ଥିବା ଅବସ୍ଥାରେ ଏ ପ୍ରାଣୀ ଅଧିକ ଦୁର୍ବଳ । ଥିବୀଜ୍‌ର ରାଜକୁମାର ଅଡ଼ିପସ୍ ଏହି ପ୍ରଶ୍ନର ଉତ୍ତର ଦେଇଥିଲେ । ପ୍ରାଣୀଟି ଆଉ କେହି ନୁହେଁ, ସ୍ୱୟଂ ମଣିଷ । ସେ ସୁସ୍ଥ ସବଳ ଥିଲେ ଦୁଇ ପାଦରେ ଚାଲେ, ବୁଢ଼ାଦିନେ ବାଡ଼ି ଧରୁ ଥିବାରୁ ସେତେବେଳେ ତିନିପାଦିଆ ଓ ଶୈଶବରେ ଗୁରୁଣ୍ଡିବା ଅବସ୍ଥାରେ ଚାରିପାଦିଆ ।

ସ୍ଫିଙ୍କ୍‌ସ ତା ପ୍ରଶ୍ନର ଠିକ୍ ଉତ୍ତର ଶୁଣି ପାହାଡ଼ରୁ ଡେଇଁପଡ଼ି ଆତ୍ମହତ୍ୟା କରିଥିଲା । ତା'ର ସର୍ତ୍ତ ଥିଲା ସେହିପରି । ଉତ୍ତର ଦେଇ ନ ପାରିଲେ ସେ ବାଟୋଇକୁ ମାରିବ । ଠିକ୍ ଉତ୍ତର ପାଇଲେ ନିଜେ ମରିବ ।

ନମିଅର ଦୁର୍ଦ୍ଦାନ୍ତ ସିଂହ ସ୍ଫିଙ୍କ୍‌ସର ଭାଇ । ତାକୁ ହେରାକ୍ଲିଜ୍ ବଧ କରିଥିଲେ ।



# କାଡ଼ମସ୍ ଓ ଇଉରୋପ

ମିଶରର ବୀର ରାଜପୁତ୍ର କାଡ୍‌ମସ୍ ଗ୍ରୀସ୍‌ର ଏକ ବିଶିଷ୍ଟ ନଗର ଥିବାଜ୍‌କୁ ପ୍ରତିଷ୍ଠା କରିଥିଲେ । ତାଙ୍କର ଭଉଣୀ ଇଉରୋପଙ୍କୁ ଖୋଜିବାକୁ କାଡମସ୍ ଗ୍ରୀସ୍ ଯାଇଥିଲେ । ଇଉରୋପଙ୍କ ହରଣବୃତ୍ତ ଗୋଟାଏ କାହାଣୀ ।

ରାଜଜେମା ଇଉରୋପ ସହଚରୀମାନଙ୍କ ସହିତ ସମୁଦ୍ର କୂଳରେ ବୁଲୁଥାନ୍ତି । ତାଙ୍କ ଗାଈ ଗୋଠରେ ଗୋଟିଏ ଅପୂର୍ବ ସୁନ୍ଦର ଧଳା ଷଣ୍ଢ ଉପରେ ଇଉରୋପଙ୍କ ଆଖି ପଡ଼ିଗଲା । କି ବିଶାଳ ବୃଷଭ ! ଦେହରୁ ତେଲ ନିଗିଡ଼ି ପଡୁଛି । ଶିଙ୍ଗ ଦୁଇଟି ସତେ କି ରୁପାର ! ବୃଷଭର ସୌନ୍ଦର୍ଯ୍ୟରେ ମୁଗ୍ଧ ହୋଇ ଇଉରୋପ ତା ପାଖକୁ ଗଲେ । ହାତୀ ପରି ଷଣ୍ଢ ପୁଣି ମେଣ୍ଢାଛୁଆଟି ପରି ଶାନ୍ତ ! ଇଉରୋପ ତା ସହିତ ଖେଳିବାକୁ ଆରମ୍ଭ କଲେ । ତାର ଚକ୍‌ଚକିଆ ଶିଙ୍ଗରେ ଫୁଲହାର ପିନ୍ଧାଇ ଦେଲେ । ଅଳ୍ପ ସମୟ ଭିତରେ ଶାନ୍ତ, କୌତୁକିଆ ବୃଷଭ ପିଠିରେ ବସିବାକୁ ତାଙ୍କୁ ଭୟ ଲାଗିଲା ନାହିଁ । ବୃଷଭ ବୁଲି ବୁଲି ଖେଳିଲା ପରି ସମୁଦ୍ର କୂଳରେ ଇଉରୋପଙ୍କୁ ବୁଲାଉଥାଏ । ହଠାତ୍ ସେ ଖୁବ ବେଗରେ ସମୁଦ୍ର ଭିତରକୁ ପଶିଗଲା ଓ ଇଗଲ ରୂପଧରି ଇଉରୋପଙ୍କୁ ପିଠିରେ ବସାଇ ଉଡ଼ିଗଲା ।

ସେ ବୃଷଭ ଆଉ କେହି ନୁହେଁ; ସ୍ୱୟଂ ଦେବରାଜ ଜିଅସ୍ । ଇଉରୋପଙ୍କ ସୌନ୍ଦର୍ଯ୍ୟରେ ମୁଗ୍ଧ ହୋଇ ଜିଅସ୍ ତାଙ୍କୁ ବିବାହ କରି-ବାକୁ ଇଚ୍ଛା କରିଥିଲେ । ଇଉରୋପଙ୍କୁ ନେଇ ଜିଅସ୍ କ୍ରିଟ୍ ପଳାଇ ଥିଲେ । କ୍ରିଟ୍‌ରେ ମାଇନୋସ୍ ରାଜବଂଶର ପ୍ରତିଷ୍ଠାତା ମାଇନ୍ ହେଉଛନ୍ତି ଜିଅସ୍ ଓ ଇଉରୋପଙ୍କ ପୁତ୍ର ।

ଝିଅକୁ ଖୋଜିବାକୁ ମିଶରର ରାଜା ପୁଅମାନଙ୍କୁ ବିଭିନ୍ନ ଦିଗକୁ ପଠାଇଲେ । ଗ୍ରୀସ୍‌ର ଅନେକ ସ୍ଥାନରେ ଭଉଣୀକୁ ଖୋଜି କାଡ୍‌ମସ୍ କିଛି ସନ୍ଧାନ ପାଇଲେ ନାହିଁ । ଡେଲ୍‌ଫାଇର ଦୈବନିର୍ଦ୍ଦେଶ ପୀଠରୁ କିଛି ସୂଚନା ପାଇବାର ଆଶା ରଖି କାଡ଼ମସ୍ ସେଠାକୁ ଗଲେ । ଭଉଣୀକୁ ପାଇବାର ଆଶା ଛାଡ଼ି ଗୋଟିଏ ଗାଈର ଅନୁସରଣ କରିବାକୁ କାଡ଼ମସ୍‌ଙ୍କୁ ପରାମର୍ଶ ମିଳିଲା । ଗାଈ ଯେଉଁଠି ଥକି ପଡ଼ିଯିବ, ସେହି-ଠାରେ କାଡ଼ମସ୍ ଏକ ନଗର ପ୍ରତିଷ୍ଠା କରିବେ ।

ଗୋଟିଏ ସୁନ୍ଦର ଗାଈ ଦେଖି ଅନୁଚରମାନଙ୍କ ସହିତ କାଡ଼ମସ୍ ତା ର ଅନୁସରଣ କଲେ । ଗାଈଟି ମୁହୂର୍ତ୍ତେ ବିଶ୍ରାମ କରିବାକୁ ବସିଗଲା ନାହିଁ । ଯେଉଁଠି ଗାଈ ପଡ଼ିଗଲା ସେଇଠି କାଡ଼ମସ୍ ଥିବାଜ୍ ନଗର ପ୍ରତିଷ୍ଠା କରିଥିଲେ ।

ଗାଈଟିକୁ ଯଥାଶୀଘ୍ର ଏଥେନାଙ୍କ ପାଖରେ ଭୋଗ ଲଗାଇବା ପାଇଁ କାଡ଼ମସ୍ ତାଙ୍କର ସଙ୍ଗୀମାନଙ୍କୁ ଏରିଜ୍‌ଙ୍କ ଝରଣାରୁ ପବିତ୍ର ଜଳ ଆଣିବାକୁ ପଠାଇଲେ । ଏରିଜ୍‌ଙ୍କର ବିରାଟ ସର୍ପ ସେହି ଝରଣାର ଜଗୁଆଳି ବୋଲି କାହାକୁ ଜଣା ନ ଥିଲା । ଏହି ସର୍ପ କାଡ଼ମସ୍‌ଙ୍କର ଅନେକ ସଙ୍ଗୀଙ୍କୁ ମାରି ପକାଇଲା । କ୍ରୋଧରେ କାଡ଼ମସ୍ ସର୍ପକୁ ବିନାଶ କରି ପବିତ୍ର ଜଳ ଆଣିଲେ ଓ ଏଥେନାଙ୍କ ପୂଜା କଲେ । ତାଙ୍କ ପୂଜାରେ ସନ୍ତୁଷ୍ଟ ହୋଇ ଦେବୀ ମୃତ ସର୍ପର ଦାନ୍ତଗୁଡ଼ିକୁ ମାଟିରେ ବୁଣିଦେବା ପାଇଁ ତାଙ୍କୁ ଉପଦେଶ ଦେଲେ । ଦେବୀଙ୍କ କଥା ମାନି କାଡ଼ମସ୍ କେତେଗୁଡ଼ିଏ ଦାନ୍ତ ମଞ୍ଜି ପରି ମାଟିରେ ବୁଣିଦେବା ମାତ୍ରେ ଅସ୍ତ୍ରଶସ୍ତ୍ରରେ

ସଜ୍ଜିତ ଯୋଦ୍ଧାମାନେ ମାଟିରୁ ବାହାରି ପଡ଼ିଲେ । ସେମାନଙ୍କର 'ଯୁଦ୍ଧ ଦେହି' ଭାବ ଦେଖି କାଡ଼୍‌ମସ୍ ଗୋଟିଏ ଢେଳା ଗୋଟେଇ ସେମାନଙ୍କ ଉପରକୁ ଫୋପାଡ଼ିଲେ । କିଏ ଢେଳା ପକାଇଲା ବୋଲି ସେମାନଙ୍କ ଭିତରେ କଳିଆ ଲାଗିଗଲା । ପରସ୍ପରକୁ ଢେଳା ଫିଙ୍ଗିଥିବାର ଦୋଷ ଦେଇ ସେମାନେ ନିଜ ମଧ୍ୟରେ ଘୋର ଯୁଦ୍ଧରେ ମାତିଲେ । ଅଳ୍ପ ସମୟ ଭିତରେ ପାଞ୍ଚଜଣଙ୍କୁ ଛାଡ଼ି ସମସ୍ତେ ମରିପଡ଼ିଲେ । ଯେଉଁ ପାଞ୍ଚଜଣ ବଞ୍ଚିଲେ, ସେମାନେ କାଡ଼୍‌ମସ୍‌ଙ୍କର ବିଶ୍ୱସ୍ତ ସଙ୍ଗୀ ହୋଇ ରହିଲେ ।

ଏରିଜ୍‌ଙ୍କ ସର୍ପକୁ ମାରିଥିବାରୁ ଏରିଜ୍ କ୍ରୋଧ କରିବା ସ୍ୱାଭାବିକ । ତାଙ୍କୁ ଶାନ୍ତ କରିବାକୁ କାଡ଼୍‌ମସ୍ ଆଠବର୍ଷ ତାଙ୍କ ସେବାରେ ଲାଗିଲେ ଆଠବର୍ଷ ପରେ ଏଥେନାଙ୍କ ଦୟାରୁ ଏକ ବଡ଼ ଭୂଖଣ୍ଡ ଥିବାଜ୍ ନଗରରେ ମିଳିଗଲା । ଏଥେନାଙ୍କ ମଧ୍ୟସ୍ଥତାରେ କାଡ଼୍‌ମସ୍ ଏରିଜ୍ ଓ ଆଫ୍ରୋଡ଼ାଇଟ୍‌ଙ୍କର କନ୍ୟା ହାର୍ମୋନିଆ (ଯାହାଙ୍କ ନାମରୁ 'ହାର୍ମୋନିୟମ୍' ଶବ୍ଦ ସୃଷ୍ଟି ହୋଇଛି)ଙ୍କୁ ବିବାହ କଲେ । ଏହି ବିବାହ ବଡ଼ ଜାକଜମକ୍‌ରେ ହେଲା । ଅଲିମ୍ପିଆର ସବୁ ଦେବତା ବିବାହ ଉତ୍ସବରେ ଯୋଗ ଦେଇଥିଲେ । କୌଣସି ମନୁଷ୍ୟର ବିବାହରେ ଦେବତାଙ୍କର ଯୋଗଦାନ ସେଇ ପ୍ରଥମ । ଦେବଦେବୀମାନେ । ବରକନ୍ୟାଙ୍କୁ ବହୁ ମୂଲ୍ୟବାନ ଉପହାର ଦେଇଥିଲେ ।



# ଫ୍ରିକ୍ସସ୍

ବଓସିଆ ଅନ୍ତର୍ଗତ ଗୋଟିଏ ରାଜ୍ୟର ରାଜା ଆଥେମାସ୍ କାଡ୍‌ମସ୍‌ଙ୍କ ଝିଅକୁ ବିବାହ କରିଥିଲେ । ଏ ଘଟଣାରେ ଆଥେମାସ୍‌ଙ୍କର ପ୍ରଥମ ରାଣୀ କ୍ରୁଦ୍ଧ ହେଲେ । ଦୁଇ ରାଣୀଙ୍କ ମଧ୍ୟରେ ବିବାଦ ଲାଗି ରହିଥାଏ । ସେମାନେ ପରସ୍ପରକୁ ଖାଲରେ ପକାଇବା ପାଇଁ ସବୁବେଳେ ଉପାୟ ପାଞ୍ଚୁଥାନ୍ତି । ରାଜ୍ୟର ନାରୀମାନେ ସାନରାଣୀଙ୍କୁ ଭଲ ପାଉଥିଲେ । ଥରେ ତାଙ୍କ କଥା ମାନି ରାଜ୍ୟସାରା ସ୍ତ୍ରୀଲୋକେ ସେ ବର୍ଷର ବିହନ ମଞ୍ଜିକୁ ନିଆଁରେ ଭାଜିଦେଲେ । ପୁରୁଷମାନେ ଏହାର ଟେର୍ ପାଇଲେ ନାହିଁ । ଠିକଣା ସମୟରେ କ୍ଷେତରେ ବିହନ ବୁଣାଗଲା । କିନ୍ତୁ କାହାରି କ୍ଷେତରେ ଗୋଟିଏ ଗଛ ବି କଅଁଳିଲା ନାହିଁ । ବଡ଼ ଅସମ୍ଭବ କଥା । ନିଶ୍ଚୟ ରାଜ୍ୟ ଉପରେ କୌଣସି ଦେବତାଙ୍କର କୋପ-ଦୃଷ୍ଟି ପଡ଼ିଛି । ଏହାର ପ୍ରତିକାର କ'ଣ ଜାଣିବା ପାଇଁ ରାଜା ଡେଲ୍‌ଫାଇର ଦେବପୀଠକୁ ଦୂତ ପଠାଇଲେ । ସାନ ରାଣୀ ଏହି ଦୂତକୁ ହାତ କରି-ନେଲେ । ଏପରି ଷଡ଼ଯନ୍ତ୍ର ଫଳରେ ଡେଲ୍‌ଫାଇରୁ ଖବର ଆସିଲା ଯେ, ବଡ଼ ରାଣୀଙ୍କର ପୁଅ ଫ୍ରିକ୍ସସ୍ ବଳି ଦେଲେ ଯାଇ ରାଜ୍ୟ ଦେବତାଙ୍କ କୋପରୁ ରକ୍ଷା ପାଇବ ।

ଏ ଖବର ପାଇ ରାଜା ଖୁବ୍ ଦୁଃଖକଲେ । କିନ୍ତୁ ଆଉ ଉପାୟ କ'ଣ ? ଗୋଟିଏ ପାହାଡ଼ ଉପରେ ବଳିବେଦୀ ପ୍ରସ୍ତୁତ ହେଲା । ରାଜା କାନ୍ଦ

କାଢ ଫ୍ରିକ୍ସସ୍ ସହିତ ପାହାଡ଼ ଉପରକୁ ଗଲେ । ସବୁ ପ୍ରସ୍ତୁତ । ଅପ୍ରତ୍ୟାଶିତ ଭାବେ ବୀର ହେରେକ୍ଲିଜ୍ ପହଞ୍ଚିଯାଇ ରାଜାଙ୍କ ହାତରୁ ଖଣ୍ଡା ଛଡ଼ାଇ ନେଲେ । ତାଙ୍କର ପିତା ଦେବଦେବ ଜିଅସ୍ ନିରବଳ ବହୁଦ୍ଧରେ । ପ୍ରଥମ ରାଣୀ ଦେବୀ ହେରାଙ୍କର ଭକ୍ତ । ରାଜା ହେରୋକ୍ଲିଜ୍ଙ୍କ ସହିତ କଥାବାର୍ତ୍ତା ହେଉଥିବା ଅବସରରେ ଦେବୀ ପଠେଇଥିବା ଗୋଟିଏ ଉଡ଼ନ୍ତା ସୁବର୍ଣ୍ଣର ମେଷ ଫ୍ରିକ୍ସସ୍ଙ୍କ ପାଖରେ ଓହ୍ଲାଇଲା । ମେଷଠାରୁ ଦେବୀଙ୍କର ନିର୍ଦ୍ଦେଶ ଜାଣି ଫ୍ରିକ୍ସସ୍ ଭଉଣୀ ହେଲି ସହିତ ମେଷ ପିଠିରେ ବସି ଉଡ଼ିଗଲେ । ଉଡ଼ିବା ସମୟରେ ମୁଣ୍ଡ ବୁଲାଇ ଯିବାରୁ ମେଷ ପିଠିରୁ ଖସିଯାଇ ହେଲି ଇଉରୋପ ଓ ଏସିଆ ମଝିରେ ଥିବା ଅପ୍ରଶସ୍ତ ସମୁଦ୍ର ଗର୍ଭରେ ପଡ଼ିଲେ । ତାଙ୍କ ସମ୍ମାନାର୍ଥେ ଏହି ପ୍ରଣାଳୀର ନାମ ହେଲେସ୍ପଣ୍ଟ ରଖାଯାଇଛି ।

ହେଲେସ୍ପଣ୍ଟ ଟପି ଫ୍ରିକ୍ସସ୍ ନିରାପଦରେ କଲ୍‌ଚିସ୍‌ଠାରେ ପହଞ୍ଚିବା ପରେ କୃତଜ୍ଞତାସ୍ୱରୂପ ସୁବର୍ଣ୍ଣ ମେଷକୁ ଜିଅସ୍ଙ୍କ ପାଖରେ ବଳିଦେଇଥିଲେ । କେତେ ବର୍ଷ ପରେ ଏହି ମେଷର ଲୋମଶ ସୁବର୍ଣ୍ଣ ଛାଲ ପାଇଁ ମହା କନ୍ଦଳ ସୃଷ୍ଟି ହୋଇଥିଲା ।

କଲ୍‌ଚିସ୍ ଗ୍ରୀସ୍‌ଠାରୁ ଅନେକ ଦୂର । ଗ୍ରୀକ୍‌ମାନେ ସେଇ ଦୂରଦେଶରେ ଆଧିପତ୍ୟ ବିସ୍ତାର କରିଥିଲେ । ସେଇ ଦୂର ଦେଶକୁ ଯିବା, ସେଠାରେ ବାଣିଜ୍ୟ ବିସ୍ତାର କରିବା ଇତ୍ୟାଦି ଗ୍ରୀକ୍ ଜାତିର ସ୍ୱପ୍ନ ଓ ଆଶା ଆକାଂକ୍ଷା ଫ୍ରିକ୍ସସ୍ ଓ ଆର୍ଗୋ ଅଭିଯାନ ପରି ପୌରାଣିକ କାହାଣୀ ମାଧ୍ୟମରେ ରୂପ ପାଇଛି ।



# ଆର୍ଗୋ ଅଭିଯାନ

ଥେସାଲ୍ଲି ଅନ୍ତର୍ଗତ ଆଓଲକସ୍‌ର ରାଜା ମରିଯିବା ପରେ ତାଙ୍କ ପୁଅ ଇସନ୍ ସିଂହାସନ ପାଇବା କଥା । ମାତ୍ର ଇସନ୍‌ଙ୍କୁ ବନ୍ଦୀ କରି ତାଙ୍କର ଜଣେ ସମ୍ପର୍କୀୟ ପିଲିଆସ୍ ଗାଦି ମାଡ଼ି ବସିଲେ । ଜାସନ୍ ଇସନ୍‌ଙ୍କ ପୁତ୍ର । ଜାସନ୍ ଜନ୍ମ ହେବା ପରେ କାଳେ ପିଲିଆସ୍ ତାଙ୍କୁ ମାରି ପକାଇବେ ସେଥିପାଇଁ ଇସନ୍‌ଙ୍କ ବନ୍ଧୁମାନେ ଶିଶୁପୁତ୍ରକୁ ନେଇ ବଣରେ ଛାଡ଼ି ଆସିଲେ ।

ବଣରେ ଶିଶୁ ଜାସନ୍‌ଙ୍କର ପାଳିତ ପିତା ହେଲେ ଚିରନ୍ । ଚିରନ୍ ଜଣେ ସେଣ୍ଟର୍ । ସେଣ୍ଟର ପୁରାଣକାରମାନଙ୍କର ଏକ କଳ୍ପନା । ଏହାର ଅର୍ଦ୍ଧାଙ୍ଗ ମନୁଷ୍ୟ ଓ ଅର୍ଦ୍ଧାଙ୍ଗ ଅଶ୍ୱ । କେବଳ ଜାସନ୍ ନୁହନ୍ତି, ଆକିଲିସ୍, ଇନିଆନ୍ ଓ ଗ୍ରୀସ୍‌ର ଆଉ କେତେକ ମହାନ୍ ବୀରଙ୍କର ଧର୍ମପିତା ହେଉଛନ୍ତି ଚିରନ୍ ।

ଯୌବନରେ ପଦାର୍ପଣ କରି ଜାସନ୍ ରାଜ୍ୟକୁ ଗଲେ ଓ ପିଲିଆସ୍‌ଙ୍କୁ ନିଜର ପୈତୃକ ରାଜ୍ୟ ଫେରସ୍ତ ମାଗିଲେ । ପିଲିଆସ୍ ଦେଖିଲେ, ଏଭଳି ବୀର ଯୁବକକୁ ସିଧା ନାହିଁ କରିଦେବା ବୁଦ୍ଧିମାନ୍‌ର କାର୍ଯ୍ୟ ହେବନାହିଁ । ସେ ଛଳନା କରି କହିଲେ, ଜାସନ୍ ଆଗ ରାଜ୍ୟକୁ ଏକ ଅଭିଶାପରୁ ରକ୍ଷା କରନ୍ତୁ, ତା ପରେ ରାଜ୍ୟ ସମ୍ଭାଳନ୍ତୁ । ବୁଢ଼ା

ବସ୍ଥାରେ ରାଜ୍ୟ ସମ୍ଭାଳିବା ପାଇଁ ତାଙ୍କୁ ବଡ଼ କଷ୍ଟ ହେଉଛି । ବିଷୟଟି ହେଉଛି, ଫ୍ରିକସସ୍‌ଙ୍କ ଆତ୍ମା କଲ୍‌ଚିଅସ୍ ଠାରେ ଅତୃପ୍ତ ହୋଇଅଛି । ବିଦେଶରେ ଫ୍ରିକସସ୍ ପ୍ରାଣତ୍ୟାଗ କଲେ । ସେଠାରେ ତାଙ୍କର ଅନ୍ତ୍ୟେଷ୍ଟିକ୍ରିୟା ଯଥାବିଧି ପାଳିତ ହୋଇନାହିଁ । ଡେଲ୍‌ଫାଇର ନିର୍ଦ୍ଦେଶ ଅନୁସାରେ ସୁବର୍ଣ୍ଣ ମେଷର ଚର୍ମ ବିଦେଶରୁ ଆଣିଲେ ଯାଇ କଲ୍‌ଚିଅସ୍‌ଙ୍କ ଆତ୍ମା ଶାନ୍ତିପାଇବ ଓ ରାଜ୍ୟର ମଙ୍ଗଳ ହେବ । ତେଣୁ ଜାସନ୍ ଯାଇ ସୁବର୍ଣ୍ଣ ମେଷଚର୍ମ ନେଇ ଆସନ୍ତୁ । ତା ପରେ ରାଜ୍ୟ ଫେରିପାଇବେ ।

ଜାସନ୍ ଜାଣିପାରିଲେ, ପିଲିଆସ୍ ତାଙ୍କୁ ସାକ୍ଷାତ ମୃତ୍ୟୁ ମୁହଁକୁ ଠେଲୁଛନ୍ତି । କଲ୍‌ଚିଅସ୍‌ରେ ଏସିଜ୍‌ଙ୍କର ବଗିଚାରେ ସୁବର୍ଣ୍ଣ ମେଷଚର୍ମ ଗୋଟିଏ ଗଛରେ ଝୁଲୁଛି । ଗୋଟିଏ ଭୟଙ୍କର ସାପ ତାର ଜଗୁଆଳୀ । ଭବିଷ୍ୟବାଣୀ ଅଛି ଯେ ମେଷଚର୍ମ ଚୋରି ହେଲେ କଲ୍‌ଚିଅସ୍ ରାଜାଙ୍କ ମୃତ୍ୟୁ ହେବ । ତେଣୁ ରାଜା ଓ ରାଜ୍ୟବାସୀ ସବୁବେଳେ ଜାଗ୍ରତ । କଲ୍‌ଚିଅସ୍‌ରେ କୌଣସି ବିଦେଶୀର ପ୍ରବେଶ ନିଷେଧ । ଅଜାଣତରେ ବିଦେଶୀ କଲ୍‌ଚିଅସ୍‌ରେ ପଶିଲା ମାତ୍ରେ ତାକୁ ମାରି ଦିଆଯାଏ । ଏତେ ବିପଦ ସତ୍ତ୍ୱେ ତାଙ୍କ ଅଜାଙ୍କର ଅତୃପ୍ତ ଆତ୍ମାର ସଦ୍‌ଗତି ପାଇଁ ଜାସନ୍ ସଂକଳ୍ପ କଲେ ।

କଲ୍‌ଚିସ୍ ଅଭିମୁଖେ ଯାତ୍ରା କରିବାକୁ ଜାସନ୍ ବିପୁଳ ଆୟୋଜନରେ ଲାଗିପଡ଼ିଲେ । ଗୋଟିଏ ବିରାଟ ଜାହାଜ ତିଆରି କରାଇବା ହେଲା ତାଙ୍କ ପ୍ରଥମ କାମ । ଏହି ଜାହାଜର ନାମ ଆର୍ଗୋ । ଆର୍ଗୋର ଅର୍ଥ ଦ୍ରୁତଗାମୀ ଜାହାଜ ତିଆରି ସରିବାରୁ ତାଙ୍କ ସହିତ ଏହି ଦୁଃସାହାସିକ ଅଭିଯାନରେ ଯୋଗ ଦେବାକୁ ଜାସନ୍ ଗ୍ରୀସ୍‌ର ବୀର ଯୋଦ୍ଧାଙ୍କୁ ଡାକରା ଦେଲେ । ଗ୍ରୀସ୍‌ର ସବୁ ବଡ଼ ବୀର ଜାସନ୍‌ଙ୍କ ଆହ୍ୱାନ ଶୁଣି ଆଗେଇ ଆସିଲେ । ହେଲେନ୍‌ଙ୍କ ପାଇଁ ଟ୍ରୟ ସହିତ ଯୁଦ୍ଧ କରିବାକୁ ଗ୍ରୀକ୍ ବୀରମାନେ ଏକତ୍ରିତ ହେବା ବ୍ୟତୀତ ଅତୀତ ବା ଭବିଷ୍ୟତରେ ଆଉ କେବେ ଗ୍ରୀସ୍ ଇତିହାସରେ ଏପରି ଘଟି ନଥିଲା ।

ଗ୍ରୀସ୍‌ର ବୀରଶ୍ରେଷ୍ଠ ହେରେକ୍ଲିଜ୍ କେବଳ ଜାସନ୍‌ଙ୍କ ସହିତ ଯୋଗ ଦେଲେ ନାହିଁ, ତାଙ୍କର ନେତୃତ୍ୱକୁ ମଧ୍ୟ ମାନି ନେଇଥିଲେ । ହେରେକ୍ଲିଜ୍‌ଙ୍କ ବ୍ୟକ୍ତିତ ରାଜା ପିଲିଅସ୍‌ଙ୍କ ପୁତ୍ର ଆକାଷ୍ଟସ୍, ଆର୍ଗୋର ମୁଖ୍ୟ ନିର୍ମାତା ଆର୍ଗସ୍, ଏଥେନ୍ସ୍‌ର ବୀର ରାଜ ପୁତ୍ର ଥିସିଅସ୍, ଏରିଜ୍‌ଙ୍କ ପୁତ୍ର ଆସ୍କାଲଫସ୍, ହର୍ମିଜ୍‌ଙ୍କ ପୁତ୍ର ଇଚାଆନ୍, ଅପୋଲଙ୍କ ପୁତ୍ର ଇଡ୍‌ମୋନ୍, ପୋସିଡେନ୍‌ଙ୍କ ପୁତ୍ର ବିଚକ୍ଷଣ ଜାହାଜ କାପ୍ତାନ୍ ନାଉପ୍ଲିଅସ୍, ଟ୍ରୟ ଯୁଦ୍ଧର ବରିଷ୍ଠ ବୀର ଆଜାକ୍ସଙ୍କ ପିତା ଓଇଲିଅସ୍, ଥ୍ରେସ୍‌ର କବି ଅର୍ଫିଅସ୍, ଗ୍ରୀସ୍‌ର ସର୍ବଶ୍ରେଷ୍ଠ ଶିକାରୀ କୁମାରୀ ଆଟାଲାଣ୍ଟା, ବୋରିଆସ୍ (ଉତ୍ତର ପବନ ଦେବତା)ଙ୍କର ବୀରପୁତ୍ର କାଲାଇସ୍ ଏବଂ ଆହୁରି ଅନେକ ବୀର ଆର୍ଗୋ ଅଭିଯାନରେ ଯୋଗ ଦେଇଥିଲେ ।

ଯେଉଁ ବିଚିତ୍ର ଅଭିଜ୍ଞତା ଆର୍ଗୋଦଳ ଅର୍ଜନ କରିଥିଲେ ଓ ସେମାନଙ୍କୁ ଯେଉଁସବୁ ବାଧାବିଘ୍ନର ସମ୍ମୁଖୀନ ହେବାକୁ ପଡ଼ିଥିଲା ସେଗୁଡ଼ିକୁ ଭିତ୍ତି କରି ଅନେକ କାହାଣୀ ରହିଛି ।



# ଜାସନଙ୍କ କାର୍ଯ୍ୟ ସିଦ୍ଧି

ବହୁ ବାଧା ବିଘ୍ନ ଅତିକ୍ରମ କରି ଆର୍ଗୋ କଲ୍‌ଚିସ୍‌ରେ ପହଞ୍ଚିଲା । ଜାସନ୍ ପ୍ରସ୍ତାବ କଲେ ପ୍ରଥମେ ରାଜାଙ୍କୁ ଭଲରେ ମେଷଚର୍ମ ମଗାଯାଉ । ନ ଦେଲେ ଅନ୍ୟ ବ୍ୟବସ୍ଥା କରାଯିବ । ସମସ୍ତଙ୍କ ମନକୁ ଏ ପ୍ରସ୍ତାବ ପାଇଲେ । ଫ୍ରିକସସ୍‌ଙ୍କର ଜଣେ ପୁଅକୁ ଧରି ଜାସନ୍ ରାଜାଙ୍କ ପାଖକୁ ଗଲେ ।

ଏଣେ ସେମାନଙ୍କର ପ୍ରିୟ ଭକ୍ତ ଜାସନ୍ କିପରି କୃତକାର୍ଯ୍ୟ ହେବ ସେ ବିଷୟରେ ଦେବୀ ହେରା ଓ ଦେବୀ ଏଥେନା ଅଲିମ୍ପସ୍‌ରେ ମନ୍ତ୍ରଣା କରୁଥାନ୍ତି । ଗୋଟିଏ ଉପାୟ ମିଳିଲା । ଯଦି ବିଚକ୍ଷଣା ରାଜଜେମା ମିଡ଼ିଆ ଜାସନ୍‌ଙ୍କୁ ସାହାଯ୍ୟ କରନ୍ତି, ତେବେ ଆଉ ଚିନ୍ତା ନାହିଁ । ଗୁଣି ବିଦ୍ୟାରେ ମିଡ଼ିଆ ଅତୁଳନୀୟ । କିନ୍ତୁ ସେ କାହିଁକି ପିତାଙ୍କର ଶତ୍ରୁକୁ ସାହାଯ୍ୟ କରିବେ ? ଏହାର ମଧ୍ୟ ବାଟ ମିଳିଗଲା । ଦୁଇ ଦେବୀ ସ୍ଥିର କଲେ, ମିଡ଼ିଆଙ୍କ ହୃଦୟରେ ଜାସନ୍‌ଙ୍କ ପ୍ରତି ଗଭୀର ଆକର୍ଷଣ ସୃଷ୍ଟି କରିବାକୁ ହେବ ।

ରାଜାଙ୍କ ପାଖରେ ପହଞ୍ଚି ଜାସନ୍ ଫ୍ରିକସସ୍‌ଙ୍କ ପୁଅଙ୍କୁ ତାଙ୍କର ପୈତୃକ ସମ୍ପତ୍ତି ଫେରାଇ ଦେବାକୁ ଦାବୀ କଲେ । ରାଜା ଦେଖିଲେ, ବଡ଼ ଗଣ୍ଡଗୋଳିଆ ବ୍ୟାପାର । ଏ ତେଜସ୍ୱୀ ଟୋକାକୁ ସିଧା ମନା

କରିଦେଲେ କି କାଣ୍ଡ କରିବ କିଏ ଜାଣେ ? ତେଣୁ ସୁବର୍ଣ୍ଣ ଛାଲ ଫେରାଇବା ପାଇଁ ସେ ଗୋଟିଏ ପଣ ରଖିଲେ । ତାହା ଏହିପରି—

ହିଫାଷ୍ଟସ୍ ଦେବତା ଗଢ଼ିଥିବା ଦୁଇଟି ଭୟଙ୍କର ବୃଷଭଙ୍କୁ ଯୋଚି ଜାସନ୍ ଏରିଜ୍‌ଙ୍କ ମନ୍ଦିର ଜମି ଚାଷ କରିବେ । ତା ପରେ ଡ୍ରାଗନ୍ ମରିଥିବା ସାପର ଦାନ୍ତ ଜମିରେ ବୁଣିଦେବେ । ରାଜାଙ୍କ ପାଖରେ ଏହି ସର୍ପ ଦାନ୍ତ କିଛି ଥିଲା । ବୃଷଭ ଦୁଇଟି ବଡ଼ ହିଂସ୍ର । ସେମାନଙ୍କର ପିତ୍ତଳର ଗୋଡ଼ । ନାକପୁଡ଼ାରୁ ଅଗ୍ନି ନିର୍ଗତ ହେଉଥାଏ ।

ରାଜାଙ୍କ ସହିତ ଜାସନ୍‌ଙ୍କର ପାଟିତୁଣ୍ଡ ଶୁଣି ମିଡ଼ିଆ ଅନ୍ଦର ମହଲରୁ ବାହାରି ଆସିଲେ । ଦେଖିଲେ ଜଣେ ଅତି ସୁନ୍ଦର ବୀରଯୁବକ । ଦେବୀମାନଙ୍କର ଯୋଜନା ସଫଳ ହେଲା । ଜାସନ୍‌ଙ୍କୁ ବିବାହ କରିବାକୁ ମିଡ଼ିଆ ମନ ବଳାଇଥିଲେ ।

ସନ୍ଧ୍ୟାବେଳେ ଜାସନ୍ ଚିନ୍ତାମଗ୍ନ ହୋଇ ବସିଥାନ୍ତି, ମିଡ଼ିଆଙ୍କ ଦୂତ ଆସି ପହଞ୍ଚିଲା । ମିଡ଼ିଆ ଖବର ପଠାଇଥାନ୍ତି, ଜାସନ୍ ତାଙ୍କୁ ବିବାହ କରିବାକୁ ରାଜିହେଲେ ସେ ଜାସନ୍‌ଙ୍କୁ ସାହାଯ୍ୟ କରିବେ । ଏ ସୁଯୋଗ କିଏ ଛାଡ଼େ ? କାର୍ଯ୍ୟସିଦ୍ଧି ସାଙ୍ଗକୁ କନ୍ୟାଲାଭ !

ମିଡ଼ିଆ ଜାସନ୍‌ଙ୍କୁ ବୋତଲେ ମନ୍ତ୍ରସିଦ୍ଧ ଫୁଲରସ ଦେଲେ । କକେସିଆନ୍ କ୍ରୋକସ୍ ଫୁଲର ରସ । କିଛି ସାଧାରଣ କକେସିଆନ୍ କ୍ରୋକସ୍ ନୁହେଁ, ପ୍ରୋମିଥିଅସ୍ ଦଣ୍ଡ ଭୋଗୁଥିବା ବେଳେ ତାଙ୍କ ଶରୀରରୁ ଝରିଥିବା ରକ୍ତରୁ ଏହି ଫୁଲ ଫୁଟିଥିଲା । ଏହି ମନ୍ତ୍ରସିଦ୍ଧ ଫୁଲର ରସ ଗୁଣ ହେଉଛି, ଏହାକୁ ଲଗାଇ ଜଣେ ନିଆଁରେ ମଧ୍ୟ ପଶିଯାଇ ପାରେ । ଦେହରେ ଏହି ରସ ବୋଳି ଜାସନ୍ ବୃଷଭଙ୍କର ନାକରୁ ବାହାରୁଥିବା ଅଗ୍ନିଶିଖା ତାପରୁ ରକ୍ଷା ପାଇବେ ।

ମିଡିଆଙ୍କ ସାହାଯ୍ୟପାଇ ଜାସନ୍ ସେହି ଭୟଙ୍କର ବୃଷଭଦ୍ୱୟଙ୍କୁ ବଳପୂର୍ବକ ଯୋଚି ଜମି ଚଷିଲେ ଓ ତହିରେ ସାପଦାନ୍ତ ବୁଣିଦେଲେ ।

ନିମିଷକେ ମାଟିଭିତରୁ ବାହାରି ଆସିଲେ ସଶସ୍ତ୍ର ଯୋଦ୍ଧାମାନେ । ଏମାନେ ଜାସନଙ୍କୁ ମାରି ପକାଇ ଥାଆନ୍ତେ । ମାତ୍ର କାଡ୍‌ମସ୍‌ଙ୍କପରି ଜାସନ୍ ସେମାନଙ୍କ ଉପରକୁ ଟେକାଟିଏ ଫୋପାଡି ଦେଲେ । କିଏ ଟେକା ଫୋପାଡିଲା ବୋଲି ନିଜନିଜ ଭିତରେ କଳିକରି ଯୁଦ୍ଧରେ ସମସ୍ତେ ମଲେ ।

ଜାସନ୍ ଅସମ୍ଭବ ସର୍ତ୍ତ ପୂରଣ କରିପାରିବେ ବୋଲି ରାଜାଙ୍କର ବିଶ୍ୱାସ ନଥିଲା ।

ଜାସନ୍ ସଫଳ ହେଲାପରେ ରାଜା ନିଜକଥା ରକ୍ଷା ନ କରି ତାଙ୍କ ସହିତ ଖେଳିଲେ । ଶେଷରେ ମିଡ଼ିଆଙ୍କ ସାହାଯ୍ୟରେ ମେଷଚ୍ଛାଲ ଉଦ୍ଧାର ହେଲା । ଆକାରରେ ଆର୍ଗୋ ଜାହାଜଠାରୁ ମଧ୍ୟ ବଡ଼ ସର୍ପ ଦିନ ରାତି ସୁବର୍ଣ୍ଣର ଛାଲକୁ ଜଗିଥାଏ । ମିଡ଼ିଆ ମନ୍ତ୍ରବଳରେ ତାକୁ ଶୁଆଇ ପକାଇବାରୁ ଜାସନ୍ ତାହା ନେଇ ଆସିଲେ ।

ମିଡ଼ିଆଙ୍କୁ ସାଙ୍ଗରେ ଧରି ଜାସନ୍ ଗ୍ରୀସ୍ ଫେରିଲେ । ଫେରିବା ବାଟରେ କମ୍ ବିପଦର ସମ୍ମୁଖୀନ ହେବାକୁ ପଡ଼ିଲା ନାହିଁ ।

ଜଣେ ପ୍ରଭାବଶାଳୀ ନାରୀ ଭାବେ ମିଡ଼ିଆଙ୍କୁ ସମଗ୍ର ଗ୍ରୀସ୍ ଅଳ୍ପ ଦିନରେ ଚିହ୍ନିଗଲା । ତାଙ୍କର ଜୀବନ ଘଟଣାବହୁଳ । ଘଟଣାଚକ୍ରରେ ସେ ଇଟାଲୀ ଚାଲିଗଲେ ଓ ସେଠାକାର ଲୋକଙ୍କୁ ମନ୍ତ୍ରତନ୍ତ୍ର ଶିଖାଇଲେ । ଇଟାଲୀରେ ମିଡ଼ିଆ ଜଣେ ଦେବୀରୂପେ ପୂଜା ପାଆନ୍ତି ।



# ମହାନ୍ ଶିକାରୀ ଆଟାଲାଣ୍ଟା

ଆଟାଲାଣ୍ଟା ଜଣେ ରାଜଝିଅ । ତାଙ୍କ ବାପା ପୁଅଟିଏ ଚାହୁଁଥିଲେ । ଝିଅଟିଏ ଜନ୍ମ ହେବାରୁ ତାକୁ ନେଇ ସେ ଜଙ୍ଗଲରେ ଛାଡ଼ି ଆସିଲେ । ଆଟାଲାଣ୍ଟା ସେଇ ଝିଅ । ଏହି ଅସହାୟା ଶିଶୁଟି ଉପରେ ଦୟା ବହି ଦେବୀ ଆର୍ଟେମିଜ୍ ତାକୁ କ୍ଷୀର ପିଆଇବାକୁ ଗୋଟିଏ ଭାଲୁ ପଠାଇଥିଲେ । ଜଣେ ଶିକାରୀ ଆଟାଲାଣ୍ଟାକୁ ପାଳିଲା । ପିଲାଦିନୁ ଆଟାଲାଣ୍ଟା ଶିକାରୀଙ୍କ ମେଳରେ ବଢ଼ିଲା । ଧନୁଶର ହେଲା ତା'ର ଖେଳଣା । ବଡ଼ ହେବା ସଙ୍ଗେ ସଙ୍ଗେ ଆଟାଲାଣ୍ଟାଙ୍କ ଧନୁଶର ଚାଳନା ଓସ୍ତାଦ୍ ଶିକାରୀମାନଙ୍କୁ ସ୍ତମ୍ଭୀଭୂତ କରିଦେଲା । ଯୌବନରେ ପଦାର୍ପଣ କରିବା ବେଳକୁ ଆଟାଲାଣ୍ଟାଙ୍କ ଯଶ ଚାରିଆଡ଼େ ଖେଳି ଯାଇଥାଏ ।

ଥରେ କାଲିଡ଼ନ୍ ରାଜ୍ୟରେ ଗୋଟିଏ ବରାହ ମାତିଲା । ସେ କିଛି ସାଧାରଣ ବରାହ ନୁହେଁ । କୌଣସି କାରଣରୁ ରାଜ୍ୟର ରାଜାଙ୍କ ଉପରେ କୁପିତା ହୋଇ ଆର୍ଟେମିଜ୍ ସେହି ଭୟଙ୍କର ବରାହକୁ ପଠାଇଥିଲେ । ବରାହ ରାଜ୍ୟରେ ନାନା ଉତ୍ପାତ କଲା । କୌଣସି ଉପାୟରେ ବରାହକୁ ମାରି ନ ପାରି ରାଜା ଗ୍ରୀସ୍‌ର ସବୁ ବୀରମାନଙ୍କୁ ବରାହ ହାତରୁ ରାଜ୍ୟକୁ ରକ୍ଷା କରିବା ପାଇଁ ଅନୁରୋଧ ଜଣାଇ ନିମନ୍ତ୍ରଣ କଲେ । ରାଜାଙ୍କ ନିମନ୍ତ୍ରଣ ରକ୍ଷା କରି ଅନେକ ବୀର ଆସିଲେ । ସେମାନଙ୍କ ମଧ୍ୟରେ ଜାସନ୍, ଥିସିଅସ୍, ନେଷ୍ଟର ପ୍ରଭୃତି ମହାବୀର ଅନ୍ତର୍ଗତ ।

ଗୋଟିଏ ହିଅ ସନ୍ଧ୍ୟା ମିଶି ବରାହ ମାରିବାକୁ କେତେକ ଆମନ୍ତ୍ରିତ ବୀର ଆପତ୍ତି କରିଥିଲେ । ମାତ୍ର ରାଜାଙ୍କର ପୁଅ ମେଲାଗର୍ ଏ ଆପତ୍ତି ଶୁଣିଲେ ନାହିଁ । ଯେଉଁ ଯେଉଁଠାରେ ଅସ୍ତ୍ରଶସ୍ତ୍ର ଧରି ବରାହ ମାରିବାକୁ ବୀରମାନେ ଏକାଠି ବାହାରିଲେ । କିନ୍ତୁ ବରାହକୁ ମାରିବେ କ'ଣ କେତେଜଣ ଲକ୍ଷ୍ୟଭ୍ରଷ୍ଟ ହୋଇ ଆପଣାର ସଙ୍ଗୀକୁ ମାରିପକାଇଲେ । ପିଲଅସ୍ ଓ ଦଳର ଆଉ ଜଣେ ଯୋଦ୍ଧା ଟେଲମୋନ୍ ବରାହକୁ ଆକ୍ରମଣ କରିବାକୁ ଯାଇ ଓଲଟି ମରି ଥାଆନ୍ତେ । ଠିକ୍ ସମୟରେ ଆଟାଲାଣ୍ଟାଙ୍କ ଅବ୍ୟର୍ଥ ଶର ବରାହର କାନମୂଳେ ଗଳିଯାଇ ତାକୁ ଘାଏଲ କଲା । ତାଙ୍କୁ ଅଭିନନ୍ଦନ ଜଣାଇବା ପରିବର୍ତ୍ତେ ପୁରୁଷ ପଣିଆ ଦେଖାଇ ଜଣେ ବୀର ଆଟାଲାଣ୍ଟାଙ୍କୁ କହିଲେ, "ସେମିତି କ'ଣ ବରାହ ଶିକାର କରାଯାଏ ? ମୋର ଶିକାର କୌଶଳ ଦେଖ ।" ଏହାକହି ସେ ନିଜ ଅସ୍ତ୍ର ଧରି ବରାହ ପାଖକୁ ଧାଁଇଲେ । ପରମୁହୂର୍ତ୍ତରେ ବରାହ ତାଙ୍କ ଜଙ୍ଘରୁ ଅଧେ ଝୁଣି ନେଇ ତାଙ୍କୁ ଦରମଲା କରିପକାଇଲା । ଏହିପରି ଉତ୍ତେଜନା ଭିତରେ ଆଉ କେତେଜଣ ବରାହ ହାତ ବା ଅନ୍ୟ ଶିକାରୀ ଅସ୍ତ୍ରରେ ପ୍ରାଣ ହରାଇଲେ । ଶେଷରେ ମେଗାଲ୍‌ର ଆଘାତ ବରାହକୁ ଆଉଥରେ ଅସ୍ତ୍ରାଘାତ କରିବାରେ ସଫଳ ହେବାରୁ ସେ ଧ୍ୱଂସ୍ ଜୀବ ମଲା ।

ଆଗରୁ ସ୍ଥିର ହୋଇଥାଏ ଯେଉଁ ଶିକାରୀ ବରାହକୁ ମାରିବ, ସେଇ ତା'ର ଛାଲଟି ପାଇବ । ମେଗାଲର୍ ଯଥାଶୀଘ୍ର ବରାହର ଛାଲ ଉତୁରାଇ ଆଟାଲାଣ୍ଟାଙ୍କୁ ସସମ୍ମାନେ ଅର୍ପଣ କଲେ । ସେ ଦର୍ଶାଇଲେ ଯେ ଆଟାଲାଣ୍ଟା ବରାହକୁ ଯେପରି ଶରବିଦ୍ଧ କରିଥିଲେ ସେଥିକରେ ସେ କିଛି ସମୟ ପରେ ଆପେ ମରିଥାନ୍ତା । ତେଣୁ ଛାଲ ତାଙ୍କର ପ୍ରାପ୍ୟ । ମେଗାଲର୍‌ଙ୍କର ଏ ଯୁକ୍ତି ଅନେକଙ୍କର ପସନ୍ଦ ହେଲା ନାହିଁ । ଜଣେ ନାରୀ ଏତେବଡ଼ ସମ୍ମାନ ପାଇବା କଥା ସେମାନେ ସହ୍ୟ ପାରୁ ନ ଥିଲେ । ଦୁଇ ଜଣ ଗଣ୍ଡଗୋଳ ଆରମ୍ଭ କରିବାରୁ ମେଗାଲର୍ କ୍ରୋଧରେ ସେମାନଙ୍କୁ ହତ୍ୟା କରିଥିଲେ ।

ବରାହ ବଧ ହେବା ପରେ ଆଟାଲାଣ୍ଟାଙ୍କ ପ୍ରଶଂସା ତା ପିତାଙ୍କ କାନରେ ଯାଇ ପହଞ୍ଚିଲା । ସେ ଝିଅ ପାଖରେ ପହଞ୍ଚି ତାକୁ ଆଦର କରି

ଘରକୁ ଡାକନେଲେ । ଆଟାଲାଣ୍ଟାଙ୍କ ବିବାହ ବୟସ ହୋଇ ଯାଇଥାଏ ବାପା ବର ଖୋଜିବାରେ ଲାଗିପଡ଼ିଲେ । ବିବାହ କରିବାକୁ କିନ୍ତୁ ଆଟାଲାଣ୍ଟା ମନରେ ବଡ଼ ଭୟ । ସେ ଜ୍ୟୋତିଷ ଠାରୁ ଶୁଣିଥାନ୍ତି ଯେ ତାଙ୍କର ବୈବାହିକ ଜୀବନ ସୁଖରେ କଟିବ ନାହିଁ । ବାପାଙ୍କର ବ୍ୟସ୍ତ ଦେଖି ଆଟାଲାଣ୍ଟା ଗୋଟିଏ ପଣ କଲେ । ଯେଉଁ ଯୁବକ ତାଙ୍କୁ ଦୌଡ଼ ପ୍ରତିଯୋଗିତାରେ ହରାଇ ଦେବ, ତାଁକୁଇ ସେ ବିବାହ କରିବେ । ପ୍ରତିଯୋଗିତାରେ ପରାସ୍ତ ହେଲେ ମୁଣ୍ଡକାଟ । ବାପା ଝିଅର ଏ ପଣରେ ରାଜି ହୋଇଗଲେ ।

କିନ୍ତୁ ଆଟାଲାଣ୍ଟାଙ୍କୁ ଦୌଡ଼ାରେ ହରାଇବା ଭଳି ବୀର ଯୁବକ ଗ୍ରୀସ୍‌ରେ କେହି ନ ଥିଲେ । ବୃଥାରେ ଅନେକ ରାଜପୁତ୍ରଙ୍କର ମୁଣ୍ଡ ଗଲା । ଆଟାଲାଣ୍ଟା ବିଜୁଳି ବେଗରେ ଦୌଡ଼ ପାରନ୍ତି । ମେଲାନିଅସ୍ ନାମକ ଜଣେ ଯୁବକ ଆଟାଲାଣ୍ଟାଙ୍କୁ ଭଲପାଉଥିଲେ । ତାଙ୍କୁ କିପରି ପାଇବେ ସେଥିପାଇଁ ମେଲାନିଅସ୍ ଦେବୀ ଆଫ୍ରୋଡ଼ାଇଟ୍‌ଙ୍କୁ ପ୍ରାର୍ଥନା କଲେ । ଦେବୀ ତାଙ୍କୁ ଅତି ସୁନ୍ଦର ତିନୋଟି ସୁନା ଆତ ଦେଇ ବୁଦ୍ଧି ବତାଇ ଦେଲେ ।

ସୁନା ଆତ ତିନୋଟି ଧରି ମେଲାନିଅସ୍ ଦୌଡ଼ ପ୍ରତିଯୋଗିତାକୁ ବାହାରିଲେ । ଯେମିତି ଦୌଡ଼ ଆରମ୍ଭ ହୋଇଛି, ମେଲାନିଅସ୍ ଗୋଟିଏ ଆତ ଗଡ଼େଇ ଦେଲେ । ସେ ସୁନ୍ଦର ଆତଟି ଉପରେ ଆଖି ପଡ଼ିଯିବାରୁ ଆଟାଲାଣ୍ଟା ଲୋଭ ସମ୍ଭାଳି ପାରିଲେ ନାହିଁ । ଆତଟି ଗୋଟାଇବାରେ କିଛି ସମୟ ଗଲେ ମଧ୍ୟ ସେ ସହଜରେ ଯାଇଁ ଲକ୍ଷ୍ୟସ୍ଥଳରେ ଆଗ ପହଞ୍ଚିବେ । ଏଇପରା ହାତ ଆତ ଗୋଟେଇ ଆଟାଲାଣ୍ଟା ଧାଇଁ ଆସୁଛନ୍ତି ଓ ତାଙ୍କୁ ଆଉ କେତୋଟି ମୁହୂର୍ତ୍ତରେ ଟପିଯିବେ ଦେଖି ମେଲାନିଅସ୍ ଦ୍ୱିତୀୟ ଆତଟି ଗଡ଼େଇ ଦେଲେ । ଶେଷ ମୁହୂର୍ତ୍ତରେ ତୃତୀୟ ଆତ ବ୍ୟବହାର କରିବାକୁ ହେଲା । ତିନଥର ଆତ ଗୋଟାଇବାରେ ସମୟ ଦେଇ ଆଟାଲାଣ୍ଟା ହାରିଲେ ।

ମେଲାନିଅସ୍‌ଙ୍କ ସହିତ ତାଙ୍କର ବିବାହ ହୋଇଥିଲା ।



# ମହାବୀର ହେରାକ୍ଲିଜ୍‌ଙ୍କ ଜନ୍ମ

ମନୁଷ୍ୟ ଓ ଦେବତାମାନଙ୍କୁ ବିପଦ ଆପଦରୁ ରକ୍ଷାକରିବା ପାଇଁ ଜିଅସ୍ ଜଣେ ଅଦ୍ୱିତୀୟ ବୀରପୁରୁଷଙ୍କର ଜନକ ହେବାକୁ ସ୍ଥିର କଲେ । ପୂର୍ବରୁ ଜିଅସ୍ କେତେ ଥର ମାନବୀ ସ୍ତ୍ରୀ ଗ୍ରହଣ କରିଥିଲେ । କିନ୍ତୁ ଏଥରକ କଥା ଅଲଗା । ଜଣେ ମହାନ୍ ବୀରର ଜନନୀ ହେବା ପାଇଁ ସର୍ବଗୁଣସମ୍ପନ୍ନା ନାରୀ କେବଳ ଉପଯୁକ୍ତ । ଜିଅସ୍ ଏହିପରି ଜଣେ ନାରୀଙ୍କର ସନ୍ଧାନ ପାଇଲେ । ସେ ହେଉଛନ୍ତି ଟ୍ରୋଇଜେନ୍‌ର ରାଜାଙ୍କର ସ୍ତ୍ରୀ ଆଲ୍‌କାମିନ ଆଲ୍‌କାମିନ ପରମା ସୁନ୍ଦରୀ ଓ ସର୍ବଗୁଣସମ୍ପନ୍ନା ବିଦୁଷୀ ନାରୀ । ରାଜା ଯୁଦ୍ଧକୁ ଯାଇଥାନ୍ତି । ଜିଅସ୍ ରାଜାଙ୍କ ବେଶ ଧରି ରାଣୀଙ୍କ ପାଖରେ ପହଞ୍ଚିଲେ । ରାଣୀ କାହିଁକି କିଛି ସନ୍ଦେହ କରନ୍ତେ ? ଯୁଦ୍ଧ ଫେରନ୍ତା ସ୍ୱାମୀଙ୍କୁ ଆଦର କରି ପାଛୋଟି ନେଲେ ।

ନଅ ମାସ ପରେ ଦିନ ଅଲିମ୍ପସ୍‌ରେ ଜିଅସ୍ ଘୋଷଣା କଲେ ଯେ ଆଲ୍‌କାମିନଙ୍କ ଗର୍ଭରୁ ତାଙ୍କର ମହାନ ବୀରପୁତ୍ର ହେରାକ୍ଲିଜ୍ ନିକଟରେ ଜନ୍ମଲାଭ କରିବେ । ସେ ହେବେ ମହାଦେବୀ ହେରାଙ୍କର ଗୌରବ । ସେଥିପାଇଁ ତାଙ୍କ ନାମ ରହିବ ହେରାକ୍ଲିଜ୍ । ହେରାକ୍ଲିଜ୍ ହେବେ ମାଇସିନ ଓ ଟିରିନ୍‌ସର ଭବିଷ୍ୟ ଅଧିପତି । ସଉତୁଣୀ ପୁଅର ବୀରତ୍ୱ ଓ ରୂପଗୁଣରେ ଏତେ ପ୍ରଶଂସା ଦେବୀ ହେରା ସହି ପାରିଲେ ନାହିଁ । ସେ ଗୋଟିଏ ଚକ୍ରାନ୍ତ କଲେ । ଜିଅସ୍‌ଙ୍କ ଠାରୁ କଥା ଆଦାୟ

କରିନେଲେ, ମାଇସିନ୍ ରାଜବଂଶରେ ଯେଉଁ ପିଲା ପ୍ରଥମେ ଜନ୍ମ ହେବ, ସେଇ ରାଜସିଂହାସନରେ ବସିବ । ହେରକ୍ଲିଜ୍‌ଙ୍କ ବ୍ୟତୀତ ଆଉ କାହାର ତ ଜନ୍ମ ହେବାର ନଥାଏ । ହେରାଙ୍କ କପଟରେ ପଣି ନ ପାରି ଜିଅସ୍ ରାଜି ହୋଇଗଲେ ।

କଥା ହେଉଛି, ସେତେବେଳକୁ ଆଲ୍‌କାମିନଙ୍କ ଜାଆଙ୍କର ସାତ ମାସର ଗର୍ଭ । ହେରା ପ୍ରସବର ଦେବୀଙ୍କୁ ଆଦେଶ ଦେଲେ, "ହେରେକ୍ଲିଜ୍‌ର ଜନ୍ମକୁ କିଛିଦିନ ଗଡ଼େଇ ଦିଅ ଓ ଆଲ୍‌କାମିନଙ୍କ ଜାଆର ଆଗ ପ୍ରସବ ହେଉ ।" ସେଇଆ ହେଲା । ଆଲ୍‌କାମିନଙ୍କ ଜାଆ ପ୍ରଥମେ ଜନ୍ମକଲେ ଗୋଟିଏ ସାତ ମାସିଆ ପିଲା । ତାର ନାମ ୟୁରିଷ୍ଟିଅସ୍ । ସେ ଜନ୍ମ ହେବାର ଅଳ୍ପ ସମୟ ପରେ ଜନ୍ମ ହେଲେ ହେରକ୍ଲିଜ୍ ।

ହେରାଙ୍କର ଏ ଭିନ୍ନ ଷଡ଼ଯନ୍ତ୍ରଯୋଗୁ ଜିଅସ୍ କ୍ରୋଧରେ କମ୍ପମାନ ହେଲେ । ଘୋଷଣା କଲେ, ଅଲିମ୍ପସ୍‌ରୁ ହେରାଙ୍କୁ ବହିଷ୍କାର କରାଯିବ । ଫମ୍ପାକଥା ଅବଶ୍ୟ । କାରଣ ଦେବୀ ହେରାଙ୍କର ଶକ୍ତି କିଛି କମ୍ ନୁହେଁ । ଶେଷରେ ହେରାଙ୍କ ସହିତ ଗୋଟିଏ ଚୁକ୍ତି ହେଲା । ହେରେକ୍ଲିଜ୍ ୟୁରିଷ୍ଟିଅସ୍‌ଙ୍କର ବାରୋଟି ଆଦେଶ (ଯେଡ଼େ ଅସାଧ୍ୟ ହେଉ) ପାଳନ କଲା ପରେ ଜଣେ ଦେବତା ହେବେ ।

ଏତିକରେ ଜିଅସ୍ ନୀରବ ରହିଗଲେ ନାହିଁ । ହେରାଙ୍କ ସହିତ ଯେସାକୁ ତେସା ନୀତି ଧରିବାକୁ ହେବ । ହେରାଙ୍କ ଉପରେ ଆଲ୍‌କାମିନ ହେରେକ୍ଲିଜ୍‌ଙ୍କୁ ଛଦ୍ମବେଶରେ ଲୁଚାଇଥାଆନ୍ତି । ଥରେ ସାଧାରଣ ଘରର ପିଲାଟିଏ ପରି ଶିଶୁ ହେରାକ୍ଲିଜ୍ ଖୋଲା ପଡ଼ିଆରେ ଗୋଟିଏ ଦୋଳିରେ ଝୁଲୁଥିଲେ । ପୂର୍ବ ପରିକଳ୍ପନା ଅନୁସାରେ ଦେବୀ ଏଥେନା ହେରାଙ୍କ ସହିତ ସେହିବାଟେ ବୁଲି ଯାଉଥିଲେ । ଜିଅସ୍‌ଙ୍କ ନିର୍ଦ୍ଦେଶ ଅନୁସାରେ ହେରେକ୍ଲିଜ୍‌ଙ୍କୁ ଦେଖାଇ ଦେଇ ଏଥେନା ଉଲ୍ଲସିତ ହୋଇ କହିଲେ, "ମହାଦେବୀ ! ଦେଖୁଛନ୍ତି ଏ ଅପୂର୍ବ ଶିଶୁକୁ ? କେଡ଼େ ବଳିଷ୍ଠ ହୋଇଛି । ଜଣାପଡୁଛି ଏ ତେଜୀୟାନ୍ ଶିଶୁ ଜଣେ ବଡ଼ ବୀର ହେବ ।

ଆପଣ ଦୟାକରି ଯଦି ତାକୁ କ୍ଷୀର ପିଆନ୍ତେ । କେଉଁ ଚଣ୍ଡାଳୁଣୀ ମାଆ ଖେଳକଲା ପିଲାଟିକୁ ଏକୁଟିଆ ଛାଡ଼ି ଯାଇଛି ?''

ଦେବୀ କାହିଁକି କିଛି ସନ୍ଦେହ କରନ୍ତେ ? ଅନ୍ୟମନସ୍କ ଭାବେ ହେରାକ୍ଲିଜ୍‌ଙ୍କୁ କୋଳକୁ ନେଇ ସ୍ତନ୍ୟପାନ କରାଇଲେ । ଶିଶୁ ମହା ଆନନ୍ଦରେ କ୍ଷୀର ପାନ କରୁ କରୁ ଏତେ ଯୋରରେ କ୍ଷୀର ଶୋଷିଲା ଯେ ଦେବୀଙ୍କୁ କଷ୍ଟ ହେଲା । ରାଗରେ ସେ ପିଲାଟିକୁ ଠେଲିଦେଲେ । ଦେବଙ୍କ ସ୍ତନରୁ କ୍ଷୀର ଛିଟିକି ଯାଇ ଆକାଶରେ ଛାୟାପଥ (Milky way—ମିଲ୍‌କିରୁ ମିଲ୍‌କି ଓ୍ୱେ) ସୃଷ୍ଟି ହୋଇଛି । (ଛାୟାପଥର ସୃଷ୍ଟି ଏ ସମ୍ପର୍କରେ ଏକାଧିକ ପୌରାଣିକ କାହାଣୀ ଅଛି) ।

ଆଉଗୋଟିଏ ମତ ହେଉଛି, ହର୍ମିଜ୍ ଦେବ ଜିଅସ୍‌ଙ୍କ ନିର୍ଦ୍ଦେଶରେ ଶିଶୁ ହେରାକ୍ଲିଜ୍‌ଙ୍କୁ ଚୋରାଇ ଅଲମ୍ପସ୍ ନେଇ ଯାଇଥିଲେ । ଦେବୀ ହେରା ଶୋଇଥିବା ସମୟରେ ନିଜେ ଜିଅସ୍ ଶିଶୁକୁ ଦେବୀଙ୍କ କୋଳରେ ଛାଡ଼ିଦେଲେ । ହେରାକ୍ଲିଜ୍ ଦେବୀଙ୍କଠାରୁ କ୍ଷୀରପାନ କରିବା ସମୟରେ ଜୋର୍‌ରେ କ୍ଷୀର ଶୋଷିବାରୁ ଯନ୍ତ୍ରଣାରେ ଦେବୀ ତାଙ୍କୁ ଠେଲିଦେଲେ ଓ ସମାନ କାରଣରୁ ଛାୟାପଥ ସୃଷ୍ଟି ହେଲା ।

ଦେବୀ ତାଙ୍କୁ ଠେଲନ୍ତୁ ବା ଯାହା କରନ୍ତୁ, ଯେଉଁ ଶିଶୁ ଦେବୀଙ୍କ ସ୍ତନ୍ୟପାନ କରିଛି । ସେ ଅମର ! ଯନ୍ତ୍ରଣା କାତର ଦେବୀଙ୍କର ମୁଖ ବିକୃତ ଦେଖି ଏଥେନା ସ୍ମିତ ହାସ୍ୟ କଲେ ଓ ପୁଅକୁ ଯତ୍ନରେ ପାଳିବା ପାଇଁ ଆଲ୍‌କାମିନିଙ୍କୁ ନିର୍ଦ୍ଦେଶ ଦେଇ ବିଦାୟ ନେଲେ ।

ଶିଶୁ ହେରାକ୍ଲିଜ୍‌ଙ୍କୁ ମାତ୍ର ବର୍ଷେ ବୟସ ହୋଇଥାଏ । ତାଙ୍କୁ ମାରିଦେବାକୁ ହେରା ଦୁଇଟି ଭୟଙ୍କର ବିଷଧର ସର୍ପ ପଠାଇଥିଲେ । ଦୋଳିରେ ଝୁଲୁଥିବା ଶିଶୁକୁ ଦଂଶନ କରିବାକୁ ସେମାନେ ଆସିଥିଲେ । ସେ ଅଦ୍ଭୁତ ଶିଶୁ ଦୁଇ ହାତରେ ଦୁଇ ସାପକୁ ଚିପି ଧରିବାରୁ ସେମାନଙ୍କର ପ୍ରାଣ ଗଲା । ଏହି ଘଟଣା ପରେ ଶିଶୁର ଯଶ ଚତୁର୍ଦ୍ଦିଗ ବ୍ୟାପିଗଲା । ହେରାଙ୍କ ଯୋଗୁଁ ଶିଶୁ ଯଶ ଅର୍ଜନ କରିବାରୁ ତାର ନାମ ରହିଲା ହେରାକ୍ଲିଜ୍ ।

ବୟସ ବଢ଼ିବା ସହିତ ହେରାକ୍ଲିଜ୍‌ଙ୍କ ଶିକ୍ଷା ଆରମ୍ଭ ହୋଇଥିଲା । ଦେବପୁତ୍ରମାନେ ତାଙ୍କୁ ବିଭିନ୍ନ ବିଷୟ ଶିକ୍ଷା ଦେଇଥିଲେ । ମାତ୍ର ଅଳ୍ପଦିନ ପରେ ଦେଖାଗଲା ମୁଷ୍ଟିଯୁଦ୍ଧ, ମଲ୍ଲଯୁଦ୍ଧ ପ୍ରଭୃତି ତାଙ୍କୁ କିଏ ଶିକ୍ଷା ଦେଇପାରିବ ? କାରଣ କେହି ତାଙ୍କର ସମ୍ମୁଖୀନ ହୋଇପାରୁ ନ ଥିଲେ । ବିଶେଷତଃ ଧନୁର୍ବିଦ୍ୟାରେ ହେରାକ୍ଲିଜ୍ ଅତୁଳନୀୟ ପ୍ରତିଭା ଦେଖାଇଲେ । ହେରାକ୍ଲିଜ୍‌ଙ୍କ ସମକକ୍ଷ ଧନୁର୍ଦ୍ଧର ମନୁଷ୍ୟ ବା ଦେବତାଙ୍କ ମଧ୍ୟରେ କେହି ନ ଥିଲେ ।

ହେରାକ୍ଲିଜ୍ ଯେ କେବଳ ଯୁଦ୍ଧବିଦ୍ୟା ଶିଖିଥିଲେ ତା ନୁହେଁ । ସାହିତ୍ୟ ଓ ସଙ୍ଗୀତ ମଧ୍ୟ ଅଧ୍ୟୟନ କରିଥିଲେ । ଏତେ ବଡ଼ ବୀର ହେଲେ ସୁଦ୍ଧା ଆଗଭୁର ଯୁଦ୍ଧରେ ପଶିବା ତାଙ୍କର ସ୍ୱଭାବ ବିରୁଦ୍ଧ । ଅନ୍ୟାୟର ପ୍ରତିରୋଧ କରିବାକୁ ସେ ଯୁଦ୍ଧରେ ପଶୁଥିଲେ ।

ଶାଗୁଣା ଗୋଟାଏ ଘୃଣ୍ୟପକ୍ଷୀ ଓ ଅଶୁଭର ସଙ୍କେତ ଭାବେ ନିନ୍ଦା ପାଏ । ମାତ୍ର ହେରାକ୍ଲିଜ୍ ଶାଗୁଣାକୁ ପ୍ରଶଂସା କରନ୍ତି । ଶାଗୁଣାର ମୁହଁ ଦେଖିଲେ ଅନୁକୂଳ ଶୁଭ ବୋଲି ବିଚାରନ୍ତି । ତାଙ୍କ ମତରେ, ଶାଗୁଣା ଗୋଟିଏ ଉତ୍ତମ ପକ୍ଷୀ । କାରଣ କୌଣସି ଜୀବନ୍ତ ପ୍ରାଣୀକୁ ଶାଗୁଣା ଆକ୍ରମଣ କରେ ନା ।



# ନିମିଆର ସିଂହ ଦାନବ ବଧ

ଯେତେବେଳେ ହେରାକ୍ଲିଜ୍ ୟୁରିଅସ୍‌ଙ୍କର ବାରଗୋଟି ଆଦେଶ ପାଳନ କରିବାକୁ ବାହାରିଲେ, ସେତେବେଳେ ସବୁ ଦେବଦେବୀ ତାଙ୍କୁ ଅସ୍ତ୍ରଶସ୍ତ୍ର ଇତ୍ୟାଦି ପ୍ରଦାନ କରିଥିଲେ । ହେରାକ୍ଲିଜ୍ କିନ୍ତୁ ଏତେ ଅସ୍ତ୍ରଶସ୍ତ୍ର ଦରକାର କରୁ ନ ଥିଲେ । ନିଜର ଧନୁଶର ଓ ଗଦା ଉପରେ ତାଙ୍କର ପୂର୍ଣ୍ଣ ଆସ୍ଥା ଥିଲା ।

ନିମିଆର ସିଂହକୁ ବଧ କରିବାକୁ କହିବା ଥିଲା ୟୁରିଷ୍ଟିୟସ୍‌ଙ୍କର ପ୍ରଥମ ଆଦେଶ । ଏହା ଏକ ଭୀଷଣ ଓ ଭୟଙ୍କର ସିଂହ । ତା'ର ଚର୍ମକୁ କୌଣସି ଅସ୍ତ୍ରଶସ୍ତ୍ର ଭେଦି ପାରେ ନାହିଁ । କାରଣ ସେ ସାଧାରଣ ସିଂହ ନୁହେଁ, ସିଂହରୂପୀ ଦାନବ । ନିମିଆର ଏହି ସିଂହ ଟାଇଫୁନର ନାତି (କେତେକଙ୍କ ମତରେ ପୁଅ) ।

ସିଂହକୁ ମାରିବାକୁ ପ୍ରସ୍ତୁତ ହୋଇ ହେରାକ୍ଲିଜ୍ ନିମିଆ ପାଖରେ ପହଞ୍ଚି ଗୋଟିଏ ମେଷପାଳକର ଅତିଥି ହୋଇଥିଲେ । ସିଂହ ମେଷପାଳକଙ୍କର ପୁଅକୁ ଖାଇଥାଏ । ହେରାକ୍ଲିଜ୍ ଅନୁକୂଳ କରି ବାହାରିବା ଦିନ ମେଷପାଳକ ଦେବୀ ହେରାଙ୍କ ପାଖରେ ଗୋଟିଏ ମେଣ୍ଢା ବଳି ଦେବାକୁ ବାହାରିଲା । ହେରାକ୍ଲିଜ୍ ତାକୁ ବାଧା ଦେଇ କହିଲେ, "ତିରିଶ ଦିନ

ଅପେକ୍ଷା କର । ଯଦି ମୁଁ ନିଷ୍ପଦରେ ଫେରେ ତେବେ ମୋର ରକ୍ଷା-କର୍ତ୍ତା ପ୍ରଭୁ ଜିଅସ୍‌ଙ୍କ ଉଦ୍ଦେଶ୍ୟରେ ମେଣ୍ଢା ବଳି ଦେବା । ଆଉ ଯଦି ନ ଫେରେ ତେବେ ବୀର ଶହୀଦ୍ ହେରାକ୍ଲିଜ୍ ଉଦ୍ଦେଶ୍ୟରେ ତୁମେ ମେଣ୍ଢାକୁ ବଳି ଦେବ ।”

ନମିଆରେ ପହଞ୍ଚି ହେରାକ୍ଲିଜ୍ ଗୋଟିଏ ହେଲେ ମଣିଷ ଦେଖିବାକୁ ପାଇଲେ ନାହିଁ । ସିଂହ ସମସ୍ତଙ୍କୁ ଖାଇ ସାରିଥାଏ । ତେଣୁ ସିଂହ କେଉଁଠି ଅଛି ସେ ଖବର ଦବାକୁ ମଧ୍ୟ କେହି ନଥାନ୍ତି । ଏକାକୀ ବଣ ପାହାଡ଼ରେ ଅନେକ ବୁଲି ଶେଷରେ ହେରାକ୍ଲିଜ୍ ସିଂହର ମୁହାଁମୁହିଁ ହେଲେ । ହେରାକ୍ଲିଜ୍ ଯେତେ ଶର ବର୍ଷିଲେ ସେ ସବୁ ସିଂହ ଦେହରେ ବାଜି ଓଲଟି ପଡିଲା । ତାକୁ ଖଣ୍ଡାରେ ହାଣିବାରୁ ଖଣ୍ଡା ବାଙ୍କି ଗଲା । ଗଦାରେ ପିଟିଲେ, ଗଦା ଭାଙ୍ଗିଲା । ହେରାକ୍ଲିଜ୍ ବୁଝିଲେ, ଅସ୍ତ୍ରଶସ୍ତ୍ର ସିଂହର କିଛି ଅନିଷ୍ଟ କରିପାରିବ ନାହିଁ । ଖାଲି ହାତରେ ସିଂହ ପାଖକୁ ଦୌଡ଼ିଯାଇ ତା ସହିତ ଲଢ଼ିଲେ । ଘୋର ଲଢ଼େଇ ହେଲା । ସିଂହର ବେକକୁ କିଛି ସମୟ ଚିପି ଧରିବା ଫଳରେ ସିଂହ ମଲା ।

ଠିକ୍ ତିରିଶ ଦିନ ପୂରଣ ହେଉଥିବା ଦିନ ହେରାକ୍ଲିଜ୍ ତାଙ୍କର ମେଷପାଳକ ବନ୍ଧୁ ପାଖରେ ପହଞ୍ଚିଲେ । ମେଷପାଳକ ମୃତ ହେରାକ୍ଲିଜ୍‌ଙ୍କ ଉଦ୍ଦେଶ୍ୟରେ ବଳି ଦେବାକୁ ପ୍ରସ୍ତୁତ ହେଉଥାଏ । ମଲା ସିଂହ ସହିତ ହେରାକ୍ଲିଜ୍‌ଙ୍କୁ ଦେଖି ମେଷପାଳକର ଆନନ୍ଦର ସୀମା ରହିଲା ନାହିଁ । ଦୁହେଁ ମିଶି ଜିଅସ୍‌ଙ୍କ ପାଖରେ ଗୋଟିଏ ମେଣ୍ଢା ଭୋଗ କଲେ ।

ହେରାକ୍ଲିଜ୍‌ଙ୍କୁ ମୃତ ସିଂହ ସହିତ ଦେଖି ୟୁରିଷ୍ଟିଅସ୍‌ଙ୍କର ହଲକ ଶୁଖିଗଲା । ଭୟ ଓ ବିସ୍ମୟରେ ତାଙ୍କ ପାଟିରୁ କଥା ବାହାରିଲା ନାହିଁ । କିଛି ସମୟ ଗୁମ୍ ମାରି ସେ କହିଲେ, ଏଣିକି ହେରାକ୍ଲିଜ୍‌ଙ୍କୁ ଯାହା ଆଣିବାକୁ ଆଦେଶ ହେବ, ତାହା ଆଣି ସେ ନଗର ବାହାରେ ରଖିବେ ଓ ରାଜାଙ୍କୁ ଖବର ଦେବେ ।

ସିଂହ ଦେହରେ ତ କୌଣସି ଅସ୍ତ୍ର ପୂରୁନାହିଁ, ତା'ର ଚମଡ଼ା କପର ଉତୁରିବ ହେବ ? ହେରାକ୍ଲିଜ୍‌ଙ୍କୁ ଗୋଟିଏ ବୁଦ୍ଧି ଦିଶିଲା । ସିଂହର ଉତ୍ପାତ ପର ଟାଣ ଓ ମୁନିଆ ନଖରେ ସେ ତା'ର ଛାଲ ଉତାରିଲେ । ନମିଆ ସିଂହର ଛାଲକୁ କୌଣସି ଅସ୍ତ୍ର ଭେଦ ପାରେ ନାହିଁ । ତେଣୁ ଏହି ଛାଲ ଠାରୁ ଭଲ ସାଞ୍ଜୁ ଆଉ କ'ଣ ହୋଇପାରେ ? ହେରାକ୍ଲିଜ୍ ସିଂହ ଛାଲକୁ ସାଞ୍ଜୁ ଓ ମୁଣ୍ଡକୁ ଶିରସ୍ତ୍ରାଣ ରୂପେ ବ୍ୟବହାର କଲେ ।



# ସୁନା ଆପେଲ୍ ଆଣିବାକୁ ହେରାକ୍ଲଜ୍‌ଙ୍କୁ ଆଦେଶ

ହେରାକ୍ଲଜ୍‌ଙ୍କୁ ସୁନା ଆପେଲ୍ ଗଛରୁ ଆପେଲ୍ ଆଣିବାକୁ କହିବା ଥିଲା ୟୁରିଷ୍ଟିଅସ୍‌ଙ୍କର ଏକାଦଶତମ ଆଦେଶ । ଜିଅସ୍ ଓ ହେରାଙ୍କ ବିବାହ ସମୟରେ ଧରଣୀମାତା ହେରାଙ୍କୁ ଏହି ଅପୂର୍ବ ବୃକ୍ଷ ଉପହାର ଦେଇ-ଥିଲେ । ଦେବୀଙ୍କର ଉଦ୍ୟାନରେ ଏହି ବୃକ୍ଷ ରହିଲା । ସୂର୍ଯ୍ୟଦେବ ଯେଉଁଠି ଅସ୍ତ ଯାଆନ୍ତି ସେହି ଆଟ୍‌ଲାସ୍ ପର୍ବତର ଉପତ୍ୟକାରେ ହେରାଙ୍କର ଉଦ୍ୟାନ । ଦିନେ ଦେବୀ ଦେଖିଲେ, ଆଟ୍‌ଲାସ୍‌ଙ୍କ ଝିଅ ସୁନା ଆପେଲ୍ ଗଛରେ ଲଗୁଛି । ସେହିଦିନୁ ତାଙ୍କ ଆଦେଶରେ ଗୋଟିଏ ମହାସର୍ପ ଗଛରେ ଗୁଡ଼େଇ ହୋଇ ରହି ଜଗିଲା । ଏହି ମହାସାର୍ପର ଶହେଟି ମୁଣ୍ଡ ।

ଅନେକ ପରିଶ୍ରମ ପରେ ଆପେଲ୍ ଗଛର ଅବସ୍ଥିତି ସମ୍ବନ୍ଧରେ ହେରାକ୍ଲଜ୍ ସଠିକ୍ ଖବର ସଂଗ୍ରହ କଲେ । ଏହି ଗଛରୁ କିପରି ଫଳ ତୋଳିଲେ ବିପଦ ଘଡ଼ିବ ନାହିଁ ସେ ବିଷୟ ଆଗତ ଭବିଷ୍ୟଜ୍ଞାତା ଜଣେ ସାମୁଦ୍ରିକ ଦେବତା ନିରିଅସ୍‌ଙ୍କୁ ଜଣାଥାଏ । ନିରିଅସ୍ ଶୋଇଥାନ୍ତି । ଜଳପରୀ ହେରାକ୍ଲଜ୍‌ଙ୍କୁ ନେଇ ତାଙ୍କ ପାଖରେ ପହଞ୍ଚାଇ ଦେଲେ । ନିରିଅସ୍ ବିଭିନ୍ନ ଜୀବଜନ୍ତୁଙ୍କର ରୂପ ଧରି ଖସିଯିବାକୁ ବସିଥିଲେ । ମାତ୍ର ପ୍ରତିଥର ଧରାପଡ଼ି ଶେଷରେ ଗୁପ୍ତକଥା ବତାଇଦେବାକୁ ବାଧ୍ୟ ହୋଇଥିଲେ ।

ନିରିଅସ୍‌ଙ୍କ ଉପଦେଶ ଅନୁସାରେ ହେରାକ୍ଲସ୍ ଆଟ୍‌ଲାସ୍‌ଙ୍କ ପାଖକୁ ଯାଇ ତାଙ୍କୁ ଗୋଟିଏ ସାହାଯ୍ୟ ଭିକ୍ଷା କଲେ । ଆଟ୍‌ଲାସ୍‌ଙ୍କୁ ହସ ମାଡ଼ିଲା ।

ଦିନରାତି ଚବିଶ ଘଣ୍ଟା ସେ ଯେଉଁ କାର୍ଯ୍ୟରେ ନିଯୁକ୍ତ ହୋଇଛନ୍ତି, ତାଠାରୁ ଆଉ କେଉଁ କାର୍ଯ୍ୟ କଷ୍ଟ ? ତାଙ୍କ କାର୍ଯ୍ୟରୁ ଅବ୍ୟାହତି ନ ପାଇଲେ ଅନ୍ୟ କିଛି କାର୍ଯ୍ୟ କରିବାର ପ୍ରଶ୍ନ ଉଠୁଛି କେଉଁଠି ? ହେରାକ୍ଲିଜ୍ ଆକାଶର ଭାର ବହନ କରିବାକୁ ରାଜି ହେଲେ । ତାଙ୍କର ଏପରି ଆଗ୍ରହ ଆଟ୍‌ଲାସଙ୍କୁ ଚକିତ କଲା । କିଛି ସମୟ ମୁକ୍ତ ହେବାର ଲୋଭ ସମ୍ଭାଳି ନ ପାରି ସେ ଧୀରେ ଆକାଶକୁ ହେରାକ୍ଲିଜ୍‌ଙ୍କ ମୁଣ୍ଡ ଉପରେ ଥୋଇଲେ । ହେରାକ୍ଲିଜ୍ ସେଇ ମହାଭାର ସମ୍ଭାଳିବାକୁ ସମର୍ଥ ଦେଖି ତାଙ୍କୁ ବଡ଼ ଆନନ୍ଦ ଲାଗିଲା । ସେ ବିନା ଆପତ୍ତିରେ କେତୋଟି ସୁନା ଆତ ତୋଳି ଆଣିଲେ ।

ଆଟ୍‌ଲାସଙ୍କୁ ବଡ଼ ବିଶ୍ୱାସ ଲାଗୁଥାଏ । ପୁଣି ଯାଇ ଆକାଶକୁ ଟେକି ଧରିବା ଚିନ୍ତା ତାଙ୍କୁ ବଡ଼ ବିବ୍ରତ କଲା । ଆପେଲ୍ ଗୁଡ଼ିକ ନେଇ ୟୁରିଷ୍ଟିଅସ୍‌ଙ୍କୁ ପାଖରେ ପହଞ୍ଚାଇବା କଥା ତ ? ହେରାକ୍ଲିଜ୍ ଆକାଶକୁ ମୁଣ୍ଡରେ ଥାଆନ୍ତୁ । ସେ ଯାଇଁ ଯଥା ସ୍ଥାନରେ ଆପେଲ୍ ପହଞ୍ଚାଇ ଦେଇ ଫେରି ଆସିବେ । ମୋଟେ ମାସେ ସମୟ ଲାଗିବ । ଆଟ୍‌ଲାସ୍‌ଙ୍କର ଏପରି ଉଦାରତା ଦେଖି ହେରାକ୍ଲିଜ୍ କୃତ୍ୟ କୃତ୍ୟ ହୋଇଗଲେ । ତାଙ୍କ ଉପକାର ସେ କିପରି ଶୁଝିବେ ? ଆଟ୍‌ଲାସ୍ ହେରାକ୍ଲିଜ୍‌ଙ୍କ ପିଠି ଆପୁଡ଼ିଇ ଯିବାକୁ ବାହାରିଛନ୍ତି, ହେରାକ୍ଲିଜ୍ କହିଲେ, "ଦୟାକରି ମୁହୂର୍ତ୍ତେ ଆକାଶକୁ ସମ୍ଭାଳନ୍ତୁ ତ ମୁଁ ଆଚ୍ଛା କରି ମୁଣ୍ଡରେ ଗୋଟାଏ ଠେକା ଭିଡ଼େ ।" ଆଟ୍‌ଲାସ୍ ହେରାକ୍ଲିଜ୍‌ଙ୍କ କପଟ ବୁଝିପାରିଲେ ନାହିଁ । ଯେମିତି ଆଟ୍‌ଲାସ୍ ଆକାଶକୁ ସମ୍ଭାଳିଲେ, ହେରାକ୍ଲିଜ୍ ଝାଡ଼ି ଝୁଡ଼ି ହେଲେ । ଠେକା ଫେକା ନିକାଞ୍ଚି ଛନ୍ତୁ ଆପେଲ୍ ଗୁଡ଼ିକୁ ଗୋଟାଇଲେ ଓ ଆଟ୍‌ଲାସଙ୍କୁ ଖାଣ୍ଟି ବନ୍ଧୁ ପରି ଗୋଟିଏ ହସହସି ଆରାମରେ ଆଗକୁ ଚାଲିଲେ ।

ହେରାକ୍ଲିଜ୍ ସିଧା ମାଇସିନା ନ ଫେରି ଲିଡ଼ିଆ ବାଟେ ଫେରିବାକୁ ମନସ୍ଥ କଲେ । ତାଙ୍କର ଅବଶ୍ୟ ଗୋଟିଏ ଉଦ୍ଦେଶ୍ୟ ଥାଏ । ସେ ଶୁଣିଥାନ୍ତି ଯେ ଲିଡ଼ିଆର ରାଜା ଆଣ୍ଟିଅସ୍ ପ୍ରତ୍ୟେକ ବିଦେଶୀଙ୍କୁ ଅନାଥ

ଯୁଦ୍ଧ ପାଇଁ ଆହ୍ୱାନ କରନ୍ତି । ତାଙ୍କ ହାତରେ ନିରୀହ ବିଦେଶୀ ପଥିକ ମରେ । ଆଣ୍ଟିଅସ୍ ଧରଣୀ ମାତାଙ୍କ ସନ୍ତାନ । ସେ ଖୁବ୍ ବଳବାନ । ସେତିକି ନୁହେଁ, ଅଧିକ ଶକ୍ତି ଆହରଣର ଏକ ଗୁପ୍ତ ଉପାୟ ଆଣ୍ଟିଅସ୍‌ଙ୍କର ଥିଲା । ତାଙ୍କର ମାଆ ଧରଣୀ ମାତା । ସେଥିପାଇଁ ଭୂଇଁକୁ ଛୁଇଁଲେ ତାଙ୍କର ଶକ୍ତି ବଢ଼ିଯାଏ । ଫଳରେ ଯଦି କୌଣସି ବଳବାନ୍ ପ୍ରତିଦ୍ୱନ୍ଦୀ ଯୁଦ୍ଧରେ ଆଣ୍ଟିଅସ୍‌କୁ ତଳେ ମାଡ଼ିବସେ, ତେବେ ଅଳ୍ପ ସମୟ ମଧ୍ୟରେ ତାଙ୍କର ଶକ୍ତି ବଢ଼ିଯାଏ ଓ ସେ ପ୍ରତିଦ୍ୱନ୍ଦୀଙ୍କୁ ଆଖି ପିଛୁଳାକେ ଓଲଟାଇ ଦିଅନ୍ତି । ଏପରି ଆଶ୍ଚର୍ଯ୍ୟ ଘଟଣାର କାରଣ ଅବଶ୍ୟ କାହାକୁ ଜଣା ନଥାଏ ।

ଆଣ୍ଟିଅସ୍‌କୁ ପରାସ୍ତ କରି ବଧ କରିବା ଉଦ୍ଦେଶ୍ୟରେ ହେରେକ୍ଲିଜ୍ ଲିବିଆ ବାଟେ ଫେରୁଥାନ୍ତି ! ଠିକଣା ସ୍ଥାନରେ ତାଙ୍କୁ ଯୁଦ୍ଧ ପାଇଁ ଆହ୍ୱାନ ଆସିଲା । ମଲ୍ଲଯୁଦ୍ଧ ପୂର୍ବରୁ ହେରେକ୍ଲିଜ୍ ଗ୍ରୀସ୍‌ର ଯୁଦ୍ଧରୀତି ଅନୁସାରେ ତେଲ ମାଲିସ୍ ହେଲେ । ଆଣ୍ଟିଅସ୍ ଦେହସାରା ଧୂଳି ବୋଳିଲେ । ତାଙ୍କର ଏ କାଣ୍ଡ ଦେଖି ହେରେକ୍ଲିଜ୍ ବାବା । ସେ କାହୁଁ ଏହାର ରହସ୍ୟ ବୁଝିବେ ? ଯୁଦ୍ଧ ଆରମ୍ଭ ହେଲା । ହେରେକ୍ଲିଜ୍ ଆଣ୍ଟିଅସ୍‌ଙ୍କୁ ଚିତ୍ କରି ମାଡି ବସିଲେ । ଆଣ୍ଟିଅସ୍ ସମ୍ପୂର୍ଣ୍ଣ ପରାଜିତ । ମାତ୍ର ପୁଣି ସେ କେଉଁଠୁ ବଳ ପାଇଲେ କେଜାଣି ହେରେକ୍ଲିଜ୍‌ଙ୍କୁ ଓଲଟାଇ ପକାଇଲେ । ହେରେକ୍ଲିଜ୍ ତ ପ୍ରକୃତରେ ଅଧିକ ବଳୁଆ । ମାଟିରୁ ଉଠିଗଲା ପରେ କ୍ରମଶଃ ଆଣ୍ଟିଅସ୍‌ଙ୍କ ବଳ କମିଯାଏ । ତେଣୁ ହେରେକ୍ଲିଜ୍ ତାଙ୍କୁ ପୁଣି ଲେଉଟାଇ ଚିତ୍ କରି ମାଡ଼ି ବସନ୍ତି । ଏ ଖେଳ ଦୁଇ ତିନି ଥର ଚାଲିଲା ପରେ ହେରେକ୍ଲିଜ୍ ଦେଖିଲେ, ମାଟିରେ ପଡ଼ି ରହିବା ଫଳରେ ଆଣ୍ଟିଅସ୍‌ଙ୍କର କେଉଁଠୁ ବଳ ମାଡ଼ି ଆସୁଛି । ତେଣୁ ଆଜ ତାଙ୍କୁ ଚିତ୍ ନ କରି ଦୁଇ ହାତରେ ଉପରକୁ ଉଠାଇ ନେଲେ ଓ ଶୂନ୍ୟରେ ତାଙ୍କୁ ଦୁଇ ହାତରେ ଚିପି ହାଡ଼ ଗୋଡ଼ ଚୂନା କରିଦେଲେ । ବହୁ କାଳର ଦୁର୍ଦ୍ଦାନ୍ତ ରାକ୍ଷସ ଏହିପରି ମଲା ।

# ଟ୍ରୟ ଯୁଦ୍ଧର ମଞ୍ଜି ପୋତା

ଟ୍ରୟ ଯୁଦ୍ଧକୁ କେନ୍ଦ୍ର କରି ଗ୍ରୀସ୍‌ର ମହାକବି ହୋମର୍‌ ଦୁଇଟି ମହାକାବ୍ୟ ରଚନା କରି ଯାଇଛନ୍ତି । ଇଲିଆଡ୍‌ (ଟ୍ରୟର ପ୍ରାଚୀନ ନାମ) ଓ ଅଡିସି । ଏହି ମହାକାବ୍ୟ ଦୁଇଟିର ବିଭିନ୍ନ ପ୍ରସଙ୍ଗରେ ଗ୍ରୀସ୍‌ର ପ୍ରାୟ ସମସ୍ତ ପୁରାଣ କଥା ବର୍ଣ୍ଣିତ ହୋଇଛି ।

ଯୁଦ୍ଧ କୌତୁକ ଦେଖିବାକୁ ତଥା ପୃଥିବୀରୁ ମହାବୀରମାନଙ୍କର ଯୁଗର ଅବସାନ ଘଟାଇବାକୁ ଜିଅସ୍‌ ଟ୍ରୟ ଯୁଦ୍ଧ ଇଚ୍ଛା ଥିଲେ । ତାଙ୍କର ଇଚ୍ଛା ଯୋଗୁ ଯୁଦ୍ଧ ଲାଗିବା ପାଇଁ ଘଟଣାମାନ ମଧ୍ୟ ସେହିପରି ସଜଲ୍‌ ହୋଇଥିଲା ।

ଜଳପରୀ, ସୁନ୍ଦରୀ ଓ ସର୍ବଗୁଣ ସମ୍ପର୍ଣ୍ଣ ଥେଟିସ୍‌କୁ ବିବାହ କରି ହେରାକ୍ଲେଜ୍‌ଙ୍କ ପରି ଆଉଜଣେ ଅପରାଜେୟ ବୀରଙ୍କର ଜନକ ହେବାକୁ ଜିଅସ୍‌ ଇଚ୍ଛା କରୁଥିଲେ । ପ୍ରୋମିଥିଅସ୍‌ ଜିଅସ୍‌ଙ୍କୁ ସତର୍କ କରାଇ ଦେଇ ଖବର ପଠାଇଲେ, ଯଦି ଜିଅସ୍‌ ଥେଟିସ୍‌ଙ୍କୁ ବିବାହ କରନ୍ତି ତେବେ ତାଙ୍କର ଏପରି ବଳବାନ୍‌ ପୁଅ ଜନ୍ମ ହେବ, ଯିଏ ଦିନେ ଶକ୍ତିରେ ସ୍ୱୟଂ ଦେବରାଜଙ୍କୁ ଟପିଯିବ । ଏ କଥା ଶୁଣି ଜିଅସ୍‌ ତାଙ୍କ ସିଦ୍ଧାନ୍ତରୁ ନିବୃତ୍ତି ହେଲେ ଓ ଥେଟିସ୍‌ ଯେପରି ବୀର ପିଲିଅସ୍‌ଙ୍କୁ ବିବାହ କରନ୍ତି ତାଙ୍କ ବ୍ୟବସ୍ଥା କରିଦେଲେ ।

ପିଲଅସ୍ ଓ ଥେଟସ୍‌ଙ୍କ ବିବାହ ଉତ୍ସବରେ ଯୋଗ ଦେବାକୁ ଅଲମ୍ପସ୍‌ର ସବୁ ଦେବଦେବୀ ଯାଇଥିଲେ । ସେଇ ଉତ୍ସବରେ ଯୁଦ୍ଧର ମଞ୍ଜି ପୋତା ହେଲା । ନିମନ୍ତ୍ରିତ ହୋଇ ନ ଥିଲେ ମଧ୍ୟ (ଉତ୍ସବରେ କଳିକଜିଆ କାହାକୁ ଭଲ ଲାଗେ ?) କଳହର ଦେବୀ ଇରିଜ୍ ଆସି ପହଞ୍ଚିଗଲେ । ତାଙ୍କର ଆଗମନର ବାର୍ତ୍ତା ସ୍ୱଭାବସୁଲଭ ଉଚ୍ଚ ସ୍ୱରରେ ଘୋଷଣା କରି ଇରିଜ୍ ଗୋଟିଏ ସୁନ୍ଦର ସୁନାର ଆପେଲ ସମସ୍ତଙ୍କ ଦୃଷ୍ଟି ପଡ଼ିବା ଭଳି ସ୍ଥାନରେ ଥୋଇଦେଲେ । ସେ ଆପେଲକୁ ଦେଖି ସମସ୍ତଙ୍କର ଆଖି ଝିଲସିଗଲା । ଆପେଲ ଉପରେ ଲେଖାଥିଲା, "ସର୍ବଶ୍ରେଷ୍ଠ ସୁନ୍ଦରୀଙ୍କ ପାଇଁ ।"

ଦେବୀମାନେ ସୁନା ଆପେଲକୁ ବେଢ଼ିଯିବା ସ୍ୱାଭାବିକ୍ । କେହି କିନ୍ତୁ ଆପେଲ୍ ଛୁଇଁବାକୁ ସାହାସ କରୁ ନ ଥାନ୍ତି । ଦେବୀମାନଙ୍କର ଭିଡ଼ ଦେଖି ହେରା ଯାଇ ସେ ସ୍ଥାନରେ ପହଞ୍ଚିଲେ । ଘଟଣା ବୁଝିସାରିବା ପରେ ସହଜ ଭାବେ ଆପେଲକୁ ଉଠାଇ ନେଇ କହିଲେ, "ତେବେ ତ ଏଇଟି ମୋର ! ମୁଁ ଅଲମ୍ପସ୍‌ର ରାଣୀ ।"

ଜିଅସ୍‌ଙ୍କ ଜ୍ୟେଷ୍ଠାକନ୍ୟା ଏଥେନା ଆପତ୍ତି କରି କହିଲେ, ସେଇଟି ମୋର ପ୍ରାପ୍ୟ । ମୁଁ ଭୂଛାଟାରେ ପ୍ରଜ୍ଞା ଦେବୀ ହେଇନାହିଁ ।"

ବୀଣାଜିଣା କଣ୍ଠରେ ଆଫ୍ରୋଡ଼ାଇଟ୍ ନରମ କଣ୍ଠରେ କହିଲେ, "ଆପଣ ଦୁହେଁ ଭୁଲ୍ କରୁଛନ୍ତି । ମୁଁ ସବୁ ସୌନ୍ଦର୍ଯ୍ୟର ଦେବୀ ? ମୁଁ ଥାଉଁ ଥାଉଁ ଆପେଲ୍ ଉପରେ ଆଉ କାହାର ହେବ ?"

କଳି ବଢ଼ିଲା । ଜିଅସ୍ ଆଦେଶ ଦେଲେ, ପ୍ରଥମେ ବାହାଘର ସରୁ । ବାହାଘର ଅବଶ୍ୟ ମହା ଆଡ଼ମ୍ବରରେ ସମାପ୍ତ ହେଲା । କିନ୍ତୁ ଜିଅସ୍ ନିଜେ ତିନି ଦେବୀଙ୍କର ବିବାଦ ଭିତରେ ପଶିବାକୁ ଚାହିଁଲେ ନାହିଁ । ଇଡା ପର୍ବତରେ ବାସକରୁଥିବା ବୁଦ୍ଧିମାନ୍ ଓ ନ୍ୟାୟ ପରାୟଣ ଖଣ୍ଡିଆଳ ଯୁବକ ପ୍ୟାରିସ୍ ଏହି ବିବାଦ ସମାଧାନ କରିବେ ବୋଲି ସେ ନିର୍ଦ୍ଦେଶ ଦେଲେ ।

ପ୍ୟାରିସ୍ ଜଣେ ସାଧାରଣ ପଶୁ ପାଳକ ନୁହେଁ । ସେ ଟ୍ରୟ ରାଜା ପ୍ରିୟାମ୍‌ଙ୍କ ପୁଅ । ପ୍ୟାରିସ୍ ଜନ୍ମ ହେବା ପରେ ତାଙ୍କର ଜାତକ ଦେଖି ଜ୍ୟୋତିଷମାନେ କହିଲେ, ଏଇ ଶିଶୁ ପାଇଁ ଟ୍ରୟ ଦିନେ ଧ୍ୱଂସ ପାଇବ । ତେଣୁ ତାକୁ ମାରି ଦେବା ଦରକାର । ମନକଷ୍ଟରେ ରାଜା ଶିଶୁକୁ ଘାତକ ହାତରେ ବଢ଼ାଇ ଦେଲେ । ଏଡ଼େ ସୁନ୍ଦର ପିଲାକୁ ମାରିବାକୁ ଘାତକର ହାତ ଚଳିଲା ନାହିଁ । ସେ ନେଇ ତାକୁ ଇଦା ପର୍ବତରେ ଛାଡ଼ିଦେଲା । ଛୁଆଟା ହିଂସ୍ରପଶୁ କାହାର ଆହାର ହେଉ ।

ହିଂସ୍ର ପଶୁ ତାକୁ ଖାଇବା ଦୂରର ଥାଉ, ଓଲଟି ଷୀର ଦେଇ ବଞ୍ଚାଇଲେ । ସେଇଠି ଗୋଟିଏ ସାହାସୀ ଓ ବଳୁଆ ବାଳକ ହୋଇ ପ୍ୟାରିସ୍ ବଢ଼ିଲା । ଏ କଥା କେବଳ ଘାତକ ଜାଣିଥାଏ । ପ୍ୟାରିସ୍‌ର ରାଜପୁତ୍ର ପରି ତେଜସ୍ୱ ଓ ବିଚକ୍ଷଣ ବିଚାର ବୁଦ୍ଧି ତାଙ୍କୁ ସାଧାରଣ ପଶୁପାଳକଙ୍କ ଠାରୁ ବାରି ଦେଉଥିଲା ତିନ ଦେବୀଙ୍କର କଳହର ବିଚାରକ ଭାବେ ଜିଅସ୍ ପ୍ୟାରିସ୍‌କୁ ନିଯୁକ୍ତ କଲେ ।

ହର୍ମିଜ୍ ଦେବଙ୍କଠାରୁ ଏ ଖବର ପାଇ ପ୍ୟାରିସ୍‌କୁ ଚତୁର୍ଦ୍ଦିଗ ଅନ୍ଧାର ଦିଶିଲା । ଦେବୀମାନଙ୍କର କଳହରେ ପଶିଲେ ଜଣେ ସାମାନ୍ୟ ମାନବର କି ଦଶା ହେବ ତା ସେ ଅନୁମାନ କରି ପାରୁଥାଏ । ଗୋଟିଏ ଆପଲକୁ ତିନୋଟି ଦେବୀ । ଯେଉଁ ଦୁଇଜଣ ଆପଲ ନ ପାଇବେ ସେମାନଙ୍କ ରାଗତାରି ଉପରେ ପଡ଼ିବ । ଏଣେ କିନ୍ତୁ ଜିଅସ୍‌ଙ୍କ ଆଦେଶ, ତାଙ୍କୁ ବିଚାର କରିବାକୁ ହେବ ।

ହର୍ମିଜଙ୍କ ଇସାରା ପାଇ ତିନିଦେବୀ ପ୍ୟାରିସ୍‌ଙ୍କ ଠାରୁ ଅଳ୍ପ ଦୂରରେ ଆସି ଛିଡ଼ାହେଲେ । ସେମାନେ ପ୍ୟାରିସ୍‌ଙ୍କ ବିଚାର ମାନିବାକୁ ରାଜି । ତେବେ ଏଥେନା ଗୋଟିଏ ଆପତ୍ତି ଉଠାଇଲେ । କଥା ହେଉଛି, ଆଫ୍ରୋଡ଼ାଇଟ୍ ଗୋଟିଏ ମନ୍ତ୍ରପୂତ ଅଣ୍ଟାସୂତା ପିନ୍ଧନ୍ତି । ଏହାର ପ୍ରଭାବରେ ଯିଏ ତାଙ୍କୁ ଦେଖେ ସେ ତାଙ୍କର ବଶ ହୋଇଯାଏ । ଏହି ଅଣ୍ଟାସୂତା ଖୋଲି ଦେବାକୁ ଏଥେନା ତାଙ୍କୁ କହିଲେ । "ଠିକ୍ ଅଛି," ଆଫ୍ରୋଡ଼ାଇଟ୍ ରୁଷ୍ଟ ସ୍ୱରରେ ଉତ୍ତର ଦେଲେ, "ଆପଣ ମଧ୍ୟ ଆପଣଙ୍କ

ଶିରସ୍ତ୍ରାଣ ଖୋଲିଦେବେ ।" ଶିରସ୍ତ୍ରାଣଟି ଦେବୀଙ୍କୁ ଭଲ ମାନେ । ଆଉମନ୍ତରୁ ଏପରି ଗରମାଗରମ କଥାବାର୍ତ୍ତା ଶୁଣି ପ୍ୟାରିସ୍ ଜଣାଇଲେ ଯେ ସେ ପ୍ରତ୍ୟେକ ଦେବୀଙ୍କୁ ଏକୁଟିଆ ଭେଟିବେ ଓ ଶେଷରେ ତାଙ୍କର ନିଷ୍ପତ୍ତି ଜଣାଇବେ ।

ତାଙ୍କ କଥିବା ଅନୁସାରେ ପ୍ରଥମେ ଆସିଲେ ହେରା । ଅନ୍ୟ ଦୁଇଦେବୀ ଅନ୍ତରାଳକୁ ଚାଲିଗଲେ । ପ୍ୟାରିସ୍ ମହାଦେବୀଙ୍କୁ ପ୍ରଣାମ କଲେ । ଦେବୀ କହିଲେ, "ବତ୍ସ ! ମୋତେ ଚାହାଁ । ମୁଁ ଜିଅସ୍‌ଙ୍କ ରାଣୀ" ସେହି ମହିମାମୟୀଙ୍କର ସୌନ୍ଦର୍ଯ୍ୟରେ ପ୍ୟାରିସ୍ ଅଭିଭୂତ ହୋଇ ପଡ଼ିଲା । ଦେବୀ ମଧୁର ସ୍ୱରେ କହିଲେ, "ପ୍ୟାରିସ୍ ! କଣ ଭାବୁଛୁ ? ମନେରଖ, ସୁନା ଆତ ପାଇଲେ ମୁଁ ତତେ ସମଗ୍ର ଏସିଆର ଅଧିପତି କରିଦେବି । ତୁ ହେବୁ ପୃଥିବୀର ସବୁଠାରୁ ଧନୀ ବ୍ୟକ୍ତି ।"

ପ୍ୟାରିସ୍ ମହାଦେବୀଙ୍କୁ ବିଦାୟ ଦେଇ ଏଥେନାଙ୍କୁ ଡାକିଲେ । ଜ୍ୟୋତିର୍ମୟୀ ଦେବୀଙ୍କୁ ଦର୍ଶନ କରି ପ୍ୟାରିସ୍‌ର ଆଖି ଜଳିଗଲା । ପ୍ରଜ୍ଞାର ଦେବୀ ଏଥେନା । ତାଙ୍କର ଭାବଗମ୍ଭୀରଉଜ୍ଜ୍ୱଳ ମୂର୍ତ୍ତି ଦେଖି ପ୍ୟାରିସ୍ ଇତସ୍ତତଃ ହୋଇପଡ଼ିଲେ । ଦେବୀ ଧୀର କଣ୍ଠରେ କହିଲେ' "ପ୍ୟାରିସ୍ ! ମନେ ରଖିବୁ, ସୁନା ଆତ ମୋ ପାଖକୁ ଆସିଲେ ତୁ ହେବୁ ଯୁଦ୍ଧରେ ଅଜେୟ । ରୂପ ଓ ବିଦ୍ୟାରେ ପୃଥିବୀର କୌଣସି ପୁରୁଷ ତୋର ସମକକ୍ଷ ହୋଇ ପାରିବେ ନାହିଁ ।"

ସବା ଶେଷରେ ଆଫ୍ରୋଡାଇଟ୍‌ଙ୍କ ପାଳି । ଧୀରେ ପଦକ୍ଷେପରେ ସେ ପ୍ୟାରିସ୍ ପାଖକୁ ଲାଗି ଆସିଲେ । ଦେବୀଙ୍କର ସୌନ୍ଦର୍ଯ୍ୟରେ ପ୍ୟାରିସ୍ ଅନ୍ଧ ହୋଇଗଲେ । ସୌନ୍ଦର୍ଯ୍ୟର ମୂର୍ତ୍ତିମନ୍ତ ଦେବୀ ! ତାଙ୍କ ରୂପର କି ଉପମା ଅଛି ? "ପ୍ୟାରିସ୍ ! ଆଖିଖୋଲ୍," ପ୍ୟାରିସ୍ କାନରେ କିଏ ଅମୃତ ଢାଳିଦେଲା ସତେ କି ! "ମତେ ଭଲକରି ଦେଖିଲେ ପିନା ବିଚାର କରିବୁ ? ତତେ ଦୂରରୁ ଦେଖିଲାବେଳୁ ମୁଁ ଭାବୁଛି, ତୋ ପରି ସୁନ୍ଦର ଯୁବକ ଏ ଜଙ୍ଗଲଠାରେ ଗାଈ ଜଗୁଛୁ କାହିଁକି ? ତୁ ହେଲେନ୍‌ର ବର ହେବାକୁ ଯୋଗ୍ୟ । ହେଲେନ୍‌କୁ

ଜାଣିଛୁ ? ଯଦି ସୌନ୍ଦର୍ଯ୍ୟରେ କିଏ ମୋର ସମକକ୍ଷ ଥାଏ, ସେ ହେଉଛି ହେଲେନ୍ । ମୁଁ ନିଶ୍ଚିତ, ସେ ଥରେ ଥରେ ଦେଖିବେ ଘରଦ୍ୱାର, ସ୍ୱାମୀ, ପରିବାର, ସବୁ ଛାଡ଼ି ତୋ ପାଖକୁ ଚାଲିଆସିବ । ହେଲେନ୍‌କୁ ଦେଖି ନ ଥିଲେ ମଧ୍ୟ ତାର ନାମ ଶୁଣିଥିବୁ ନିଶ୍ଚୟ ।

ପ୍ୟାରିସ୍ ନିଜର ଅଜ୍ଞତା ପ୍ରକାଶ କରିବାରୁ ଦେବୀ କହିଲେ, "ହଂସ ଡିମ୍ବରୁ ହେଲେନ୍‌ର ଜନ୍ମ । ସେ ସ୍ପାର୍ଟାର ରାଜକନ୍ୟା । ଜିଅସ୍ ତାର ଅସଲ ପିତା । ହେଲେନ୍ ମାଇସିନର ରାଜପୁତ୍ର ମେନିଲଉସ୍‌କୁ ବିବାହ କରିଛି । ବିବାହ ପରେ ମେନିଲଉସ ହୋଇଛି ସ୍ପାର୍ଟାର ରାଜା । ମେନିଲଉସ୍‌ର ବଡ଼ଭାଇ ବୀର ଆଗାମେନନ୍ ବର୍ତ୍ତମାନ ମାଇସିନର ରାଜା । ସେ ଯାହାହେଉ, ତୁ ଇଚ୍ଛାକଲେ ହେଲେନ୍‌କୁ ପାଇପାରିବୁ ।"

"ମାନ୍ଦ ଦେବୀ ! ହେଲେନ୍‌ତ ବିବାହିତା ।" ପ୍ୟାରିସ୍ ଉତ୍ତର ଉତ୍ତର କହିଲେ ।

ଦେବୀ ହସିଲେ । "ତୁ ବଡ଼ ନିର୍ବୋଧ ପ୍ୟାରିସ୍ ! କାହା ସହିତ କଥାବାର୍ତ୍ତା କରୁଛୁ ଜାଣୁ ? ମୁଁ ସୌନ୍ଦର୍ଯ୍ୟ ଓ ପ୍ରେମର ଦେବୀ । ମୁଁ ଚାହିଁଲେ ହେଲେନ୍ ତୋର ଅପ୍ରାପ୍ତ ହେବ ?"

ପ୍ୟାରିସ୍ ମନ୍ତ୍ରମୁଗ୍ଧ ହୋଇ ପୁନଃ ଆପେଲ୍‌କୁ ଆଫ୍ରୋଡ଼ାଇଟ୍‌ଙ୍କ ହାତକୁ ବଢ଼ାଇ ଦେଲେ । ମନ୍ଦହାସ କରି ଦେବୀ ଅନ୍ତର୍ଦ୍ଧାନ ହୋଇଗଲେ ।

ଘଟଣା ଚକ୍ରରେ ରାଜା ପ୍ରିୟାମ ଓ ପ୍ୟାରିସ୍‌ର ଭେଟ ହେଲା । ମୃତ ପୁତ୍ରର ସମ୍ମାନାର୍ଥେ ରାଜା ପ୍ରତିବର୍ଷ ଗୋଟିଏ କ୍ରୀଡ଼ା ପ୍ରତିଯୋଗିତା କରନ୍ତି । ଏହି କ୍ରୀଡ଼ା ପ୍ରତିଯୋଗିତାରେ ଯୋଗ ଦେବାକୁ ସେ ବର୍ଷ ପ୍ୟାରିସ୍ ରାଜଧାନୀରେ ପହଞ୍ଚିଲା । ତାର ତେଜ, ସାହାସ ଓ କ୍ରୀଡ଼ା କୌଶଳ ଦେଖି ସମସ୍ତେ ଚମତ୍କୃତ ହେଲେ । ରାଜପୁତ୍ରମାନେ ପରାସ୍ତ ହୋଇ ପ୍ୟାରିସ୍‌କୁ ମାରିପକାଇବାକୁ ବସିବାରୁ ଘାତକ ରାଜାଙ୍କୁ ସବୁକଥା ଖୋଲି କହିଦେଲା । ଏଡ଼େ ସୁନ୍ଦର ପୁଅର ଲୋଭ ରାଜା ମୁର୍କି ପାରିଲେ ନାହିଁ । ତାକୁ ଆଦରରେ ଗ୍ରହଣ କଲେ ।

# ହେଲେନ୍ ହରଣ ଓ ଯୁଦ୍ଧ ପ୍ରସ୍ତୁତି

ପ୍ୟାରିସ୍ ତାର ପିତାମାତାଙ୍କ ପାଖକୁ ଫେରିଯିବାର ଅଳ୍ପଦିନ ପରେ ଦିନେ ସ୍ପାର୍ଟାର ରଜା ଓ ହେଲେନ୍‌ଙ୍କ ସ୍ୱାମୀ ମେନେଲଉସ୍ ଅପ୍ରତ୍ୟାଶିତ ଭାବେ ଟ୍ରୟରେ ଆସି ପହଞ୍ଚିଲେ । ତାଙ୍କ ଆଗମନର କାରଣ ସ୍ପାର୍ଟାରେ ମହାମାରୀ ବ୍ୟାପିଥାଏ । ଦୈବ ନିର୍ଦ୍ଦେଶ ହେଲା, ଟ୍ରୟର ଗୋଟିଏ ପୂଜାପୀଠରେ ଭୋଗରାଗ କଲେ ରାଜ୍ୟ ମହାମାରୀ କବଳରୁ ରକ୍ଷା ପାଇବ । ମେନେଲଉସ୍ ହେଲେ ଟ୍ରୟ ରାଜାଙ୍କର ସମ୍ମାନିତ ଅତିଥି । ତାଙ୍କ ରହଣି ଭିତରେ ପ୍ୟାରିସ୍ ସହିତ ମେନେଲଉସ୍‌ଙ୍କର ଭଲ ପରିଚୟ ହୋଇଗଲା । ଆକସ୍ମିକ ଭାବେ ଗୋଟିଏ ବାଳକକୁ ମାରିଥିବାରୁ ପ୍ରାୟଶ୍ଚିତ୍ତ ପାଇଁ ସ୍ପାର୍ଟାର ଏକ ଦେବ ମନ୍ଦିରକୁ ସେ ନିକଟରେ ଯିବେ ବୋଲି ପ୍ୟାରିସ୍ ମେନେଲଉସଙ୍କୁ ଜଣାଇଥିଲେ । ତାଙ୍କର ସ୍ପାର୍ଟା ଯିବା ସମ୍ବାଦରେ ମେନେଲଉସ୍ ବଡ଼ ଖୁସି ହେଲେ ।

ଗୋଟିଏ ନୂଆ ଜାହାଜ ନିର୍ମାଣ କରାଇ ବଡ଼ ଉତ୍ସାହରେ ପ୍ୟାରିସ୍ ସ୍ପାର୍ଟା ଯାତ୍ରାକଲେ । ସ୍ପାର୍ଟାର ରାଜପ୍ରାସାଦରେ ତାଙ୍କପାଇଁ ନଅଦିନ କାଳ ବହୁତ ଉତ୍ସବ ହେଲା । ମେନେଲଉସ ପ୍ୟାରିସ୍‌ଙ୍କୁ ଖୁବ୍ ଆଦର ଯତ୍ନ କଲେ । ତାଙ୍କ ରାଣୀ ହେଲେନ୍ ନିଜେ ଅତିଥିଙ୍କର ଚର୍ଚ୍ଚା ଦାୟିତ୍ୱରେ ଥିଲେ । ହେଲେନ୍‌ଙ୍କ ପାଇଁ ପ୍ୟାରିସ୍ ସାଙ୍ଗରେ ନେଇ-

ଥିଲେ ଅନେକ ସୁନ୍ଦର ଉପହାର । ଦୁହିଁଙ୍କର ମିଳାମିଶାର ସୁଯୋଗ ପାଇ ଆଫ୍ରୋଡ଼ାଇଟ୍ ପ୍ୟାରିସ୍ ପ୍ରତି ହେଲେନ୍‌ଙ୍କ ହୃଦୟରେ ଆକର୍ଷଣ ସୃଷ୍ଟି କଲେ ।

କାର୍ଯ୍ୟ ଉପଲକ୍ଷେ ମେନେଲାଉସ୍‌ଙ୍କୁ କ୍ରିଟ୍ ଯିବାକୁ ପଡ଼ିଲା । ପ୍ୟାରିସ୍‌ଙ୍କର ଚର୍ଚ୍ଚା ଠିକ୍ ଭାବେ କରିବାକୁ ହେଲେନ୍‌ଙ୍କୁ କହି ସେ ସ୍ପାର୍ଟା ଛାଡ଼ିଲେ ।

ମେନେଲାଉସ୍‌ଙ୍କ ଅନୁପସ୍ଥିତି ପ୍ୟାରିସ୍‌ଙ୍କ ପକ୍ଷରେ ଥିଲା ଏକ ବଡ଼ ସୁଯୋଗ । ସେ ହେଲେନ୍‌ଙ୍କୁ ଧରି ଟ୍ରୟ ପଳାଇଲେ । ହେଲେନ୍ ରାଜପ୍ରାସାଦରୁ ପ୍ରଚୁର ସୁନା ଓ ମୂଲ୍ୟବାନ୍ ସମ୍ପତ୍ତି ଧରି ପ୍ୟାରିସ୍‌ଙ୍କ ସହିତ ବାହାରିଗଲେ । ଏ ଖବର ପାଇ ମେନେଲାଉସ୍ ସବୁ କାମ ଛାଡ଼ି ଯଥାଶୀଘ୍ର ରାଜ୍ୟକୁ ଫେରିଆସିଲେ ।

ମେନେଲାଉସ୍ ତାଙ୍କର ପରାକ୍ରମୀ ଭାଇ ଆଗାମେମନ୍‌ଙ୍କ ସହିତ ପରାମର୍ଶ କରି ସ୍ଥିର କଲେ ଯେ, ଏ ଘଟଣାର ଶାନ୍ତିପୂର୍ଣ୍ଣ ସମାଧାନର ଉଦ୍ୟମ ପ୍ରଥମେ କରାଯିବ । ଦୂତ ହାତରେ ଟ୍ରୟ ରାଜାଙ୍କ ପାଖକୁ ଗଲା, ହେଲେନ୍‌ଙ୍କୁ ଭଲରେ ଫେରାଇ ଦିଅ । ମାତ୍ର ଦୂତ ଟ୍ରୟରେ ପହଞ୍ଚିଲା ବେଳକୁ ପ୍ୟାରିସ୍ ପହଞ୍ଚି ନ ଥାନ୍ତି । ହେଲେନ୍‌ଙ୍କ ସହିତ ନାନା ଦେଶରେ ବୁଲିବୁଲି ମଉଜ କରି ସେ ଫେରୁଥାନ୍ତି ।

ହେଲେନ୍‌ଙ୍କ ସୌନ୍ଦର୍ଯ୍ୟ ଦେଖି ଟ୍ରୟବାସୀ ମୋହିତ ହେଲେ । ଏ ଅପୂର୍ବ ସୁନ୍ଦରୀଙ୍କୁ ଫେରାଇବାର ପ୍ରଶ୍ନ ଉଠୁଛି କେଉଁଠୁ ? ପ୍ୟାରିସ୍‌ଙ୍କ ବଡ଼ଭାଇ ବୀର ହେକ୍ଟର ହେଲେନ୍‌ଙ୍କୁ ନ ଫେରାଇବା ପାଇଁ ଶପଥ କଲେ ।

ଏଣେ ଟ୍ରୟ ଧ୍ୱଂସ କରି ହେଲେନ୍‌ଙ୍କୁ ଫେରାଇ ଆଣିବାକୁ ଆଗାମେମନ୍ ସବୁ ଗ୍ରୀକ୍ ରାଜାଙ୍କୁ ଏକାଠି କରୁଥାନ୍ତି । ବାସ୍ତବକ୍ ! ହେଲେନ୍ ପାଇଁ ଯୁଦ୍ଧ କରିବାକୁ ସେମାନେ ଥିଲେ ଚୁକ୍ତି ବଧ । ହେଲେନ୍‌ଙ୍କ ବିବାହ ସମୟରେ ଅଡ଼ିସିଅସ୍ ହେଲେନ୍‌ଙ୍କ ବାପାଙ୍କୁ

ଗୋଟିଏ ବୁଦ୍ଧି ଦେଇଥିଲେ । ସୁନ୍ଦରୀ ହେଲେନ୍‌କୁ ବିବାହ କରିବାକୁ କେଉଁ ରଜାର ଇଚ୍ଛା ନଥାଏ ? କିନ୍ତୁ କେବଳ ଜଣେ ତ ବାହା ହେବ । ତେଣୁ ହେଲେନ୍ ବାପାଙ୍କ କଥା ମାନି ସବୁ ରଜା ରାଜି ହେଲେ ଯେ, ହେଲେନ୍ ଯେଉଁ ସ୍ୱାମୀ ବାଛିବ ସେଥିରେ କେହି ବାଦ କରିବେ ନାହିଁ । ଯିଏ ଗଣ୍ଡଗୋଳ କରିବ ଓ ହେଲେନ୍‌କୁ ବଳପୂର୍ବକ ନେଇଯିବାକୁ ବସିବ, ତା ବିରୁଦ୍ଧରେ ସମସ୍ତେ ମିଶି ଯୁଦ୍ଧ କରିବେ ।

ଟ୍ରୟର ରଜାପୁଅ ଆସି ହେଲନ୍‌କୁ ଚୋରେଇ ନେବା ସମସ୍ତ ଗ୍ରୀକ୍ ଜାତି ପ୍ରତି ଅପମାନ । ପୁଣି ହେଲେନ୍‌କୁ ରକ୍ଷା କରିବା ପାଇଁ ରଜାମାନେ ପୂର୍ବ ଚୁକ୍ତିବଦ୍ଧ । ତେଣୁ ଟ୍ରୟ ବିରୁଦ୍ଧରେ ଯୁଦ୍ଧ ଅଭିଯାନ ପ୍ରସ୍ତୁତ ପର୍ବରେ ଗ୍ରୀସ୍ ପଡ଼ିଲା ଉଠିଲା ।

ଗ୍ରୀକ୍ ପକ୍ଷରେ ନେତୃତ୍ୱ ନେଲେ ବୀର ଆଗାମେମନନ୍ । ଥେଟିସ୍‌ଙ୍କ ପୁତ୍ର ଆକିଲସ୍ ଗ୍ରୀକ୍ ପକ୍ଷର ପ୍ରଧାନ ବୀର । ଏ ଦୁହିଁଙ୍କ ବ୍ୟତୀତ ଅଡ଼ିସିଅସ୍, ଅଜାକ୍‌ସ ଓ ନେଷ୍ଟରଙ୍କ ପରି ବଡ଼ ଗ୍ରୀକ୍‌ବୀର ଟ୍ରୟ ଯାତ୍ରା କରିଥିଲେ । ଅଡିସିଅସ୍ କେବଳ ଜଣେ ବଡ଼ ବୀର ନୁହନ୍ତି, ସେ ଅତ୍ୟନ୍ତ ଧୂର୍ତ୍ତ ଓ ଚତୁର । କୂଟବୁଦ୍ଧିରେ ଉଭୟପକ୍ଷେ ତାଙ୍କର ସମକକ୍ଷ କେହି ନଥିଲେ । ଯୁଦ୍ଧ ସମୟରେ ସେ ଗ୍ରୀକ୍‌ମାନଙ୍କୁ ବହୁ ସଙ୍କଟରୁ ରକ୍ଷା କରିଥିଲେ । ଗୋଟିଏ କଥାରେ, ସେ ହେଉଛନ୍ତି ଗ୍ରୀକ୍ ପକ୍ଷର ମନ୍ତ୍ରଣାଦାତା ।

ଇଥାକାର ରଜା ଅଡ଼ିସିଅସ୍‌ଙ୍କର କିନ୍ତୁ ଟ୍ରୟ ଯୁଦ୍ଧକୁ ଯିବା ପାଇଁ ଆଦୌ ମନ ନ ଥିଲା । କାରଣ ଭବିଷ୍ୟବାଣୀ ଥାଏ, ଟ୍ରୟ ଗଲେ ଦୀର୍ଘ କୋଡ଼ିଏ ବର୍ଷ କାଳ ସେ ଆଉ ଦେଶକୁ ଫେରିବେ ନାହିଁ । ତେଣୁ ଆଗାମେମନନ୍ ଓ ମେନିଲାଉସ୍ ଯେତେବେଳେ ଅଡ଼ିସିଅସ୍‌ଙ୍କୁ ନିମନ୍ତ୍ରଣ କରିବାକୁ ଆସିଲେ, ସେତେବେଳେ ସେ ପାଗଳ ହୋଇ ଯାଇଛନ୍ତି । ବୋଲି ଛଳନା କଲେ । ଦୁହେଁ ଦେଖନ୍ତି ତ ଅଡିସିଅସ୍ ଗୋଟିଏ ଗଧ ଓ ଆଉ ଗୋଟାଏ ବଳଦକୁ ଯୋଚି ସମୁଦ୍ର ବାଲିକୁ ଚଷୁଛନ୍ତି । କାହାକୁ ଚିହ୍ନୁ ନାହାନ୍ତି । ବଡ଼ ପାଗଳର ଲକ୍ଷଣ । ତେବେ ସନ୍ଦେହ ହେବା

ସ୍ୱାଭାବିକ । ସତ୍ୟାସତ୍ୟ ପରୀକ୍ଷା କରିବା ପାଇଁ ଜଣେ ଯାଇ ରାଣୀଙ୍କ କୋଳରୁ ତାଙ୍କର କୁନି ପୁଅକୁ ନେଇ ଆସି ତଳେ ଗଡ଼େଇ ଦେଲା । ଅଣ୍ଡ୍ରୋମିଅସ୍ ଦୌଡ଼ି ଆସି ପୁଅକୁ ଝାଡ଼ିଝୁଡ଼ି କୋଳକୁ ନେଲେ । ସିଆଣିଆ ପାଗଳ ଧରା ପଡିଗଲା । ଜୀବନରେ କ୍ୱଚିତ ସେ ଏପରି ଶୋଚନୀୟ ଭାବେ ପରାସ୍ତ ହୋଇଛନ୍ତି । ଏ ଘଟଣା ପରେ ଆଉ ଯୁଦ୍ଧକୁ ନ ଯାଇ ଉପାୟ କ'ଣ ?

ଗ୍ରୀକ୍ ପକ୍ଷର ଆକିଲ୍ସ ଯୁଦ୍ଧରେ ଅଜେୟ । ଯୁଦ୍ଧ ଆରମ୍ଭ ବେଳକୁ ସେ ଜଣେ ବାଳକ ମାତ୍ର । ତାଙ୍କ ବୀରତ୍ୱର ପରିଚୟ ଲୋକଲୋଚନକୁ ଆସି ନଥିଲା । କିନ୍ତୁ ଭବିଷ୍ୟବକ୍ତା କହିଲେ, ଆକିଲ୍ସ ନଗଲେ ଟ୍ରୟ ଜୟ କରିବା ଅସମ୍ଭବ । ଆକିଲ୍ସଙ୍କ ଜନ୍ମପରେ ଏକ ବିଶେଷ ଘଟଣା ଘଟିଥିଲା । ପରମା ସୁନ୍ଦରୀ ଜଳପରୀ ଥେଟିସ୍ ଜିଅସ୍‌ଙ୍କ ଇଚ୍ଛାରେ ଖାତିର୍‌ରେ ପିଲିଅସ୍‌ଙ୍କୁ ବିବାହ କରିଥିଲେ । କିନ୍ତୁ ଜଣେ ମନୁଷ୍ୟକୁ ବିବାହ କରି ସେ ବିଶେଷ ସୁଖୀ ନ ଥିଲେ ।

ଥେଟିସ୍‌ଙ୍କର ଛଅଟି ପୁଅ ଜନ୍ମ ହୋଇଥିଲେ । ମାତ୍ର ଜନ୍ମ ହେଲା ପରେ ସେମାନେ କୁଆଡ଼େ ଉଭାନ ହୋଇ ଯାଆନ୍ତି । ପିଲିଅସ୍ ତାର ପତ୍ତା ପାଆନ୍ତି ନାହିଁ । ଆକିଲ୍ସ ସେମାନଙ୍କର ସପ୍ତମ ସନ୍ତାନ । ପୁଅ ଜନ୍ମହେବା ପରେ ପିଲିଅସ୍ ସତର୍କ ରହିବା ସ୍ୱାଭାବିକ । ରାତିରେ ସେ ଶୋଇବାର ଛଳନା କରି ପଡ଼ିଥାନ୍ତି; ଦେଖିଲେ, ନବଜାତ ଶିଶୁକୁ ଧରି ଥେଟିସ୍ କୁଆଡ଼େ ବାହାରିଲେ । ପିଲିଅସ୍ ତାଙ୍କର ଅନୁସରଣ କଲେ । ଥେଟିସ୍ ପୁଅକୁ ନେଇ ଗଲେ ମୃତାଙ୍କପୁରି । ସେଠାରେ ଷ୍ଟାଇ ନଦୀରେ ପିଲାକୁ ବୁଡ଼େଇଲେ । କାଳେ ଖରସ୍ରୋତରେ ପିଲା ଭାସିଯିବ ସେଥିପାଇଁ ତା ଗୋଇଠିକୁ ଜୋର୍‌ରେ ଧରିଥାନ୍ତି । ପୁଅକୁ ସ୍ନାନ କରାଇ ଥେଟିସ୍‌ଙ୍କୁ ଘରକୁ ଫେରିବାର ଦେଖି ପିଲିଅସ୍ ଆଶ୍ୱସ୍ତ ହେଲେ । ମାତ୍ର ଘରେ ଆଉ ଗୋଟିଏ କାଣ୍ଡ ଆରମ୍ଭହେଲା । ପୁଅ ଦେହଯାକ ଅମୃତ ବୋଳି ଥେଟିସ୍ ତାକୁ ନିଆଁରେ ପକାଇଦେଲେ । ପିଲିଅସ୍ କିପରି ସମ୍ଭାଳି ରହନ୍ତେ ? ଦୌଡ଼ିଯାଇ ନିଆଁ ଭିତରୁ ପୁଅକୁ ଟାଣି ଆଣିଲେ ।

ଅପ୍ରତ୍ୟାଶିତ ଭାବେ ସ୍ୱାମୀଙ୍କୁ ଦେଖି ଥେଟିସ୍ ଡରିଯିବେ କ'ଣ ଓଲଟି ତାଙ୍କୁ ଅନେକ ଭର୍ତ୍ସନା କଲେ । ଥେଟିସ୍ ତାଙ୍କର ପୁତ୍ରମାନଙ୍କୁ ଅଜର, ଅମର ଓ ଅଜେୟ ହେବାକୁ ଚାହୁଁଥିଲେ । ସେମାନଙ୍କର ମରଣଶୀଳ ଅଂଶ ପୋଡିବାକୁ ସେ ନିଜ ପିଲାଙ୍କୁ ଅଗ୍ନିକୁ ନିକ୍ଷେପ କରୁଥିଲେ । ପୂର୍ବରୁ ଅନ୍ୟ ପିଲାମାନେ ଅବଶ୍ୟ ସମସ୍ତେ ପୋଡ଼ି ଯାଇଥିଲେ । ମାତ୍ର ଏଥରକ ସେ ଆକିଲ୍ସଙ୍କୁ ଷ୍ଟାଇର ମନ୍ତ୍ରପୂତ ପାଣିରେ ଗାଧୋଇ ଦେଇଥିଲେ । ତେଣୁ ଅଗ୍ନିରେ ଭଲଭାବେ ପୋଡ଼ିଥିଲେ ପୁଅ ତାଙ୍କର ଅମର ଓ ଅଜେୟ ହୋଇ ବାହାରିଥାନ୍ତା ।

ପିଲିଅସ୍ଙ୍କୁ ଭର୍ତ୍ସନା କରି ଥେଟିସ୍ ତାଙ୍କୁ ଛାଡି ଚାଲିଗଲେ । ପିଲାଟାକୁ ପିଲିଅସ୍ ପାଳିବେ କିପରି ? ତାକୁ ଜଙ୍ଗଲକୁ ନେଇ ତାଙ୍କର ପୁରାତନ ବନ୍ଧୁ ଚିରନ୍ଙ୍କ ଜିମା ଦେଇ ଆସିଲେ । ଚିରନ୍ଙ୍କ ସହିତ ମିଶି ଶୈଶବରୁ ଆକିଲ୍ସ ସିଂହ ଶିକାର କଲେ । ବାଲ୍ୟକାଳରୁ ସେ ସିଂହକୁ ଏକାକୀ ମାରିବାରେ ସଫଳ ହେଉଥିଲେ । ସିଂହ ମାଂସ ତାଙ୍କର ଖାଦ୍ୟ । ଆକିଲ୍ସଙ୍କର ବଳ, ସାହସ ଓ ବଜ୍ରକୁ ପରି କ୍ଷୀପ୍ରଗତି ଦେବତାଙ୍କୁ ଆଶ୍ଚର୍ଯ୍ୟ କରୁଥିଲା ।

ଷ୍ଟାଇ ନଦୀରେ ଆକିଲ୍ସଙ୍କୁ ବୁଡ଼ାଇଲା ବେଳେ ତାଙ୍କ ଗୋଇଠିରେ ପାଣି ଲାଗି ପାରିଲା ନାହିଁ । ତେଣୁ କେବଳ ଗୋଇଠି ଥିଲା ତାଙ୍କ ଶରୀରର ଦୁର୍ବଳ ଅଂଶ । ଆକିଲ୍ସଙ୍କ ବିପକ୍ଷରେ ଟ୍ରୟର କୌଣସି ବୀର ତିଷ୍ଠି ପାରୁ ନ ଥିଲେ । ସେ ଟ୍ରୟର ଅନେକ ବୀରଙ୍କୁ ବଧ କରିଥିଲେ । ମାତ୍ର ପ୍ୟାରିସ୍ଙ୍କ ଶର ଦୈବାତ୍ ଆକିଲ୍ସଙ୍କ ଗୋଇଠିରେ ବାଜିବାରୁ ତାଙ୍କର ମୃତ୍ୟୁ ହୋଇଥିଲା ।

ପ୍ରିୟାମ୍ଙ୍କର ବଡ଼ପୁଅ ହେକ୍ଟର ଟ୍ରୟପକ୍ଷର ମହାନ୍ ବୀର । ଅନ୍ୟ ବୀରମାନଙ୍କ ମଧ୍ୟରେ ଆମାଜନ୍ର ରାଣୀ ପେନ୍ଥସିଲିଆଙ୍କର କୃତିତ୍ୱ ଉଲ୍ଲେଖଯୋଗ୍ୟ । ଏହି ବୀର ନାରୀଙ୍କ ସହିତ ଯୁଦ୍ଧ କରିବା ଆକିଲ୍ସଙ୍କ ପକ୍ଷରେ ମଧ୍ୟ କଷ୍ଟକର ହେଉଥିଲା ।

ଟ୍ରୟର ରକ୍ଷାକବଚ ଥିଲା ତାର ମେଘନାଦ ପାଚେରି । ଯୁଦ୍ଧରେ ହାରିଲେ ସେମାନେ ନଗର ଭିତରକୁ ପଳାଇ ପାଚେରିର ଦ୍ୱାର ବନ୍ଦ କରି ଦେଉଥିଲେ । ଗ୍ରୀକ୍‌ମାନଙ୍କର ଆଉ କିଛି କରିବାର ନ ଥିଲା । ମୁଖ୍ୟତଃ ଏହି କାରଣରୁ ନଅବର୍ଷ କାଳ ଲଢ଼ିଲା ପରେ ମଧ୍ୟ ଗ୍ରୀକ୍‌ମାନେ ଟ୍ରୟ ଅଧିକାର କରିପାରୁ ନ ଥିଲେ ।



# ଟ୍ରୟର ପତନ

ଦୀର୍ଘ ନଅବର୍ଷ ଯୁଦ୍ଧ ଲଗିଲା ପରେ ମଧ୍ୟ ଗ୍ରୀକ୍‌ମାନେ ଟ୍ରୟ ଅଧିକାର କରି ପାରିଲେ ନାହିଁ । ନଗରର ପାଚେରି ବାହାରେ ଲଢ଼େଇ ହୁଏ । ଟ୍ରୟ ସେନା ଅସୁବିଧାରେ ପଡ଼ିଲେ ନଗର ଭିତରକୁ ପଶି ଯାଇ ପାଚେରିର ଦ୍ୱାର ସବୁ ବନ୍ଦ କରିଦିଅନ୍ତି । ଏହାପରେ ଗ୍ରୀକ୍‌ଙ୍କର ଆଉ ଉପାୟ କ'ଣ ? ସେମାନେ ସେମାନଙ୍କର ରାଜଧାନୀକୁ ଫେରିଆସନ୍ତି ।

ଦିନେ ସକାଳୁ ଟ୍ରୟବାସୀ ଦେଖିଲେ, ଗ୍ରୀକ୍ ଶିବିର ଉଠିଯାଇଛି । ଗୋଟିଏ ବି ତମ୍ବୁ ନାହିଁ । ପଡ଼ିଆ ଫାଙ୍କା । ସେମାନେ ନିଜ ନିଜର ଆଖିକୁ ବିଶ୍ୱାସ କରିପାରିଲେ ନାହିଁ । ଗ୍ରୀକ୍‌ମାନେ ସତରେ ଫେରିଗଲେ ! ନୁହେଁ ତ ଆଉ କ'ଣ ? ସେମାନଙ୍କ ଶିବିର ନାହିଁ, ସମୁଦ୍ର କୂଳରେ ଗୋଟିଏ ହେଲେ ଗ୍ରୀକ୍ ଜାହାଜ ନାହିଁ କି ଜଣେ ଗ୍ରୀକ୍ ସୈନ୍ୟକୁ ଦେଖିବାକୁ ମିଳୁନି । ଘଣ୍ଟାଏ ଭିତରେ ଟ୍ରୟ ସାରା ଖବରଟା ଖେଳିଗଲା ।

ଘଟଣା କ'ଣ ବୁଝିବାକୁ ରାଜା ପୁଅମାନଙ୍କ ସହିତ ସଦଳବଳେ ଆସି ପହଞ୍ଚିଲେ । ସମସ୍ତେ ଦେଖିଲେ ଗ୍ରୀକ୍‌ମାନେ ସତରେ ପଳାଇଛନ୍ତି । ଖୋଲା ପଡ଼ିଆରେ ଗୋଟାଏ ବିରାଟ କାଠଘୋଡ଼ା ଠିଆ ହୋଇଛି । ଏତେବଡ଼ କାଠଘୋଡ଼ା ପୂର୍ବରୁ କେହି ଦେଖି ନ ଥିଲେ । ଘୋଡ଼ା

ଦେହରେ ସ୍ୱର୍ଣ୍ଣାକ୍ଷରରେ ଲେଖାଥିଲା, "ଶୁଭରେ ଘରକୁ ଫେରିବା ପାଇଁ ଗ୍ରୀକ୍‌ମାନେ ଦେବୀ ଏଥେନାଙ୍କୁ ଏ ଅଶ୍ୱ ଅର୍ପଣ କରୁଛନ୍ତି ।"

ଯଦି ଏ ଅଶ୍ୱ ଦେବୀ ଏଥେନାଙ୍କୁ ଉତ୍ସର୍ଗ ହୋଇଛି ତେବେ ଏହାକୁ ଦେବୀଙ୍କ ମନ୍ଦିରକୁ ନେଇଯିବା ଉଚିତ୍ । ମାତ୍ର କେତେଜଣ ଏ ପ୍ରସ୍ତାବର ବିରୋଧ କଲେ । ଗ୍ରୀକ୍‌ମାନଙ୍କୁ ବିଶ୍ୱାସ ଅଛି ? ଏ ଘୋଡ଼ା ପଛରେ କିଛି ଷଡ଼ଯନ୍ତ୍ର ଥାଇପାରେ । ଟ୍ରୟର ସୈନ୍ୟମାନେ ଏହିପରି କଥାବାର୍ତ୍ତା ହେଉଥିବା ସମୟରେ ମାଟିକାଦୁଅ ହୋଇ ଜଣେ ଲୋକ ଆସି ପହଞ୍ଚିଲା । ସେ ସିଧା ରାଜା ପ୍ରିୟାମ୍‌ଙ୍କ ପାଖକୁ ଗଲା । ଲୋକଟି ଜଣେ ଗ୍ରୀକ୍ ସୈନ୍ୟ ।

ସେ କାନ୍ଦି କାନ୍ଦି ପ୍ରିୟାମ୍‌ଙ୍କୁ ତାର ଦୁଃଖ ଜଣାଇଲା । ଗତ ରାତିରେ ଅଡ଼ିସିଅସ୍ ତାକୁ ବଳି ଦେଇଥାଆନ୍ତେ । ସେ କୌଣସି ପ୍ରକାରେ ଖସିଯାଇ ବଞ୍ଚିଛି । ତା ଉପରେ ଅଡ଼ିସିଅସ୍‌ଙ୍କର ବହୁତ ରାଗ । ପୂର୍ବରୁ ତାର ଜଣେ ଭାଇ ବିରୁଦ୍ଧରେ ମିଥ୍ୟା ଅଭିଯୋଗ ଆଣି ଅଡ଼ିସିଅସ୍ ତାକୁ ମରାଇଛନ୍ତି ।

ଲୋକଟି ଏପରି କେତେକ ଗୂଢ଼ କଥା କହିଲା ଯେ ସମସ୍ତେ ତାକୁ ବିଶ୍ୱାସ କରିଗଲେ । ଶେଷରେ ସେ କାଠଘୋଡ଼ା ରହସ୍ୟଟି ଫିଟାଇ ଦେଇ କହିଲା, ଗ୍ରୀକ୍‌ମାନେ ଠିକ୍ ଅନୁକୂଳ କରି ଆସି ନ ଥିବାରୁ ଦେବୀ ଏଥେନାଙ୍କ ଉପଦେଶ ମାନି ଫେରି ଯାଇଛନ୍ତି । ପୁଣି ନିକଟରେ ସେମାନେ ଆସିବେ । ଦେବୀଙ୍କୁ ଗ୍ରୀକ୍‌ମାନେ ଏହି ଅତିକାୟ କାଠଘୋଡ଼ା ଅର୍ପଣ କରିଛନ୍ତି । ଯଦି ଟ୍ରୟବାସୀ କାଠଘୋଡ଼ାକୁ ଟାଣି ନଅନ୍ତି, ତେବେ ଟ୍ରୟ ନଗର କେହି ଅଧିକାର କରିପାରିବେ ନାହିଁ । ଘୋଡ଼ାକୁ ଯେପରି ଟ୍ରୟବାସୀ ନେଇ ନ ପାରିବେ ସେଥିପାଇଁ ସେମାନେ ଏତେ ବିଶାଳ ଘୋଡ଼ା ଗଢ଼ିଛନ୍ତି । ଏ ଘୋଡ଼ା ପାଚେରୀ ଫାଟକବାଟେ ପଶିପାରିବ ନାହିଁ ।

ଗ୍ରୀକ୍ ସୈନିକଟିର କଥା ସମସ୍ତଙ୍କ ମନକୁ ପାଇଗଲା । ଜଣେ ଦୁଇଜଣ ଆପତ୍ତି କରୁଥିଲେ, ମାତ୍ର ସେମାନଙ୍କ କଥା ଶୁଣୁଛି କିଏ ?

ସମସ୍ତେ ଘୋଡ଼ାକୁ ଧାଣି ଟାଣି ପାରେଷ୍ଟ ପାଖକୁ ନେଲେ । ପାରେଷ୍ଟ ଭଙ୍ଗା ହୋଇ ଘୋଡ଼ା ଭିତରକୁ ଗଲା । ଟ୍ରୟ ସାରା ଆନନ୍ଦ ଉତ୍ସବ । ଯୁଦ୍ଧ ଶେଷ । ଆଜି ଗ୍ରୀକ୍‌ମାନେ ସେମାନଙ୍କର କୌଣସି କ୍ଷତି କରିପାରିବେ ନାହିଁ ।

ଦିନସାରା ଆନନ୍ଦ କୋଳାହଳରେ ମାତି ରାତିରେ ଟ୍ରୟବାସୀ ନିଶ୍ଚିନ୍ତରେ ଶୋଇଗଲେ । ଏପରି ନିଶ୍ଚିନ୍ତ ନିଦ୍ରା ସେମାନଙ୍କୁ ଗତ ନଅବର୍ଷ କାଳ ସେମାନଙ୍କୁ ହୋଇ ନଥିଲା । ରାତି ଅଧ । ଘୋଡ଼ା ପେଟ ଭିତରେ ଥାଇ ଅଡ଼ିସିଅସ୍ ବନ୍ଧୁମାନଙ୍କୁ ବାହାରି ଆସିବାକୁ ନିର୍ଦ୍ଦେଶ-ଦେଲେ । ଗୋଟିଏ ଅତିକାୟ ଘୋଡ଼ା ନିର୍ମାଣ ଠାରୁ ଆରମ୍ଭ କରି ଗ୍ରୀକ୍ ସୈନିକର ଅଭିନୟ ପର୍ଯ୍ୟନ୍ତ ସବୁଥିଲା ତାଙ୍କର ବୁଦ୍ଧି । ଘୋଡ଼ା ପେଟ ଭିତରେ ଥିଲେ ଗ୍ରୀସ୍‌ର ବଛା ବଛା ବୀର । ଅନ୍ୟମାନେ ଜାହାଜରେ ସମୁଦ୍ରର ଅଳ୍ପ ଭିତରକୁ ପଳାଇ ଅଡ଼ିସିଅସ୍‌ଙ୍କର ସଙ୍କେତକୁ ଅପେକ୍ଷା କରୁଥିଲେ ।

ରାତି ଅଧରେ ସେମାନେ ଅଡ଼ିସିଅସ୍‌ଙ୍କର ଆଲୋକ ସଙ୍କେତ ପାଇ ଖୁବ ବେଗରେ ଛୁଟିଲେ କୂଳକୁ । ନିସ୍ତବ୍ଧ ରାତି । ଟ୍ରୟର କୁକୁର ଛୁଆଟିଏ ମଧ୍ୟ ଜାଣି ପାରିଲେ ନାହିଁ ଯେ, ଗ୍ରୀସ୍‌ର ସବୁ ସୈନ୍ୟ ଆସି ନଗର ଭିତରେ ।

ଏହାପରେ ଆରମ୍ଭ ହେଲା ଧ୍ୱଂସର ଲୀଳା । ଯମଦୂତ ପରି ଗ୍ରୀକ୍‌ମାନେ ସୁପ୍ତ ନଗର ବାସୀଙ୍କୁ ମାଡ଼ି ବସିଲେ । ଦାଉ ଦାଉ ଚତୁର୍ଦ୍ଦିଗ ନିଆଁ ପରି ଲାଗିଗଲା । ରାତି ପାହିଲା ବେଳକୁ ଟ୍ରୟ ପାଉଁଶ ହୋଇ ଯାଇଛି ।



# ଘର ବାହୁଡ଼ା ଅଡ଼ିସିଅାସ୍‌ଙ୍କର ଦୁର୍ଗତି

ଯୁଦ୍ଧ ସରିବା ପରେ ଗ୍ରୀକ୍ ରାଜାମାନେ ଏକାଠି ଫେରି ନଥିଲେ । ଯିଏ ଯେଉଁ ବାଟ ସୁବିଧା ମଣିଲା, ତା ଜାହାଜ ଓ ସୈନ୍ୟ ମାନଙ୍କୁ ଧରି ସେହି ବାଟରେ ଫେରିଲା । ସମସ୍ତେ ମଧ୍ୟ ଏକ ସମୟରେ ଯାତ୍ରା କରି ନ ଥିଲେ । ତଥାପି ଯୋଗ ଏପରି ଯେ ବାଟରେ ଅଧିକାଂଶଙ୍କୁ କିଛି ନା କିଛି ଦୁର୍ଘଟଣାର ସମ୍ମୁଖୀନ ହେବାକୁ ପଡ଼ିଥିଲା । ଯେଉଁ କେତେ ଜଣ ଠିକ୍ ସମୟରେ ଆସି ପହଞ୍ଚିଲେ, ସେମାନେ ଦେଖିଲେ ଦଶ ବର୍ଷ ମଧ୍ୟରେ ରାଜ୍ୟର ନାନା ସମସ୍ୟା ମୁଣ୍ଡ ଟେକିଛି । ଗ୍ରୀକ୍ ପକ୍ଷର ନେତା ଆଗାମେମନନ୍‌ଙ୍କୁ ହତ୍ୟା କରାଯାଇଥିଲା । ହତ୍ୟା କରିଥିଲେ ନିଜେ ତାଙ୍କର ରାଣୀ । କାରଣ ଦଶବର୍ଷ ମଧ୍ୟରେ ସେ ଆଉ ଜଣକୁ ବିବାହ କରି ସାରିଥିଲେ ।

ଯେଉଁ ହେଲେନ୍‌ଙ୍କ ପାଇଁ ଏତେ କାଣ୍ଡ, ସେଇ ହେଲେନ୍‌ଙ୍କୁ ମେନେଲଉସ୍ ଜାହାଜ ଦୁର୍ଘଟଣାରେ ହରାଇଲେ । ତାଙ୍କର ସଙ୍ଗୀ ମାନେ କିଏ କୁଆଡ଼େ ମରି ହଜି ଗଲେ । ଅନେକ ଦୁଃଖକଷ୍ଟ ସହିବା ପରେ ମେନେଲଉସ୍ ଓ ହେଲେନ୍‌ଙ୍କର ଭେଟ ହେଲା । ତା' ପରେ ଅବଶ୍ୟ ସେମାନେ ସୁରୁଖୁରୁରେ ରାଜ୍ୟକୁ ଫେରି ସୁଖରେ କାଳାତିପାତ କରିଥିଲେ ।

ଅଡ଼ସିଅସ୍‌ଙ୍କର ଦୁର୍ଦ୍ଦଶା ସମସ୍ତଙ୍କ ଠାରୁ ବଳି ପଡ଼ିଥିଲା । ଭବିଷ୍ୟବାଣୀ ସତ ହେଲା । ଦଶବର୍ଷ କାଳ ନାନା ଦୁର୍ଘଟଣା ଭିତରେ ଗତ କରି ସେ ରାଜ୍ୟକୁ ଫେରିଲେ । ଅଡ଼ିସିଅସ୍‌ଙ୍କର ବିଚକ୍ଷଣ ବୁଦ୍ଧି ଓ ଅସୀମ ଧୈର୍ଯ୍ୟ ତାଙ୍କୁ ରକ୍ଷା କରିଥିଲା ।

ଗୋଟିଏ ବଡ଼ ଝଡ଼ରେ କେବଳ ମେନଲାଉସ୍‌ଙ୍କ ଜାହାଜ ନୁହେଁ ଅନେକ ଗ୍ରୀକ୍ ରାଜାଙ୍କ ଜାହାଜ ଭାଙ୍ଗିରୁଜି ଗଲା । ଝଡ ଯୋଗୁ ଭାସିଯାଇ ଅଡ଼ସିଅସ୍‌ଙ୍କର ଜାହାଜ ଥ୍ରେସ୍‌ର ଏକ ନଗର ଉପକୂଳରେ ଲାଗିଲା । ଥ୍ରେସ୍ ଟ୍ରୟର ବନ୍ଧୁରାଜ୍ୟ । ତେଣୁ ନଗରବାସୀ ତାଙ୍କୁ ସ୍ୱାଗତ କରିବେ ନାହିଁ ଜାଣି ଅଡ଼ସିଅସ୍ ବଳପୂର୍ବକ ନଗର ଅଧିକାର କରିନେଲେ ଓ ରାଜାଙ୍କୁ ହତ୍ୟା କଲେ । ମନ୍ଦିର ପୂଜକର ସେ କୌଣସି ଅନିଷ୍ଟ ନ କରିବାରୁ ପୂଜକ କୃତଜ୍ଞତାରେ ବାରୋଟି ବଡ ଜାର୍‌ରେ ଅଡ଼ସିଅସ୍‌କୁ ଉତ୍କୃଷ୍ଟ ମଦ ଉପହାର ଦେଇଥିଲେ ।

ଥ୍ରେସ୍‌ର ଅନ୍ୟ ଅଞ୍ଚଳରେ ଖବର ବ୍ୟାପିଯିବାରୁ ଭୟରେ ଅଡ଼ସିଅସ୍ ଥ୍ରେସ୍ ଛାଡ଼ିଲେ । ଝଡ ତଥାପି ଥମି ନଥାଏ । ବାତ୍ୟାରେ ତାଙ୍କ ଜାହାଜ ଭାସି ଯାଇ ଗୋଟିଏ ଦ୍ୱୀପରେ ଲାଗିଲା । ସେ ଏକ ଅଦ୍ଭୁତ କମଳ ଦ୍ୱୀପ । ଦ୍ୱୀପର ଚତୁର୍ଦ୍ଦିଗ ଗୋଟିଏ ଜାତିର ସୁନ୍ଦର କଇଁଫୁଲ ଫୁଟିଥାଏ । ଯିଏ ସେଇ କଇଁଫଳ ଖାଏ ସେ ତାର ନାଁ, ଗାଁ, ଘରଦ୍ୱାର ସବୁ ଭୁଲିଯାଏ । ସମୁଦ୍ର କୂଳରେ ଆରାମରେ ପଡ଼ି ଉଷୁମ ଟାଣିବା ଛଡ଼ା ଦୁନିଆରେ ତାକୁ ଆଉ କୌଣସି କଥା ଭଲ ଲାଗେନା । ଯେଉଁମାନେ ବାସ୍ତବତାକୁ ଭୁଲି କାଳ୍ପନିକ ରାଜ୍ୟରେ ବାସ କରନ୍ତି ସେପରି ଲୋକଙ୍କୁ ପଦ୍ମଭୁକ୍ (Lotus eater) ବିଶେଷଣରେ ଭୂଷିତ କରିବା ମୂଳରେ ଏଇ କାହାଣୀଟି ରହିଛି ।

ଦ୍ୱୀପଟିକୁ ତନଖି ଦେଖିବାକୁ ଅଡ଼ସିଅସ୍ ତାଙ୍କର କେତେଜଣ ଲୋକଙ୍କୁ ପଠାଇଲେ । ସେମାନେ ଆଗ୍ରହେ କଇଁଫଳ ଖାଇ ଭୋଳ । ଅଡ଼ସିଅସ୍‌ଙ୍କୁ ଆସି ଖବର ଦେବା ଦୂରେ ଥାଉ, ତାଙ୍କ ନାମ ପର୍ଯ୍ୟନ୍ତ ଭୁଲିଗଲେ । ଅନେକ ସମୟ ଅପେକ୍ଷା କଲା ପରେ ଅଡ଼ସିଅସ୍ କେତେ-

ଜଣ ସଙ୍ଗୀଙ୍କୁ ଧରି ବାହାରିଲେ ଓ ତାଙ୍କ ଲୋକଙ୍କୁ ଠେଲି ଠେଲି ଜାହାଜକୁ ଆଣି ଯଥାଶୀଘ୍ର ସେ ବିଚିତ୍ର ଦ୍ୱୀପ ଛାଡ଼ିଲେ ।

ଅଳ୍ପଦିନ ପରେ ଅଡ଼ିସିଅସଙ୍କ ଜାହାଜ ଗୋଟିଏ ବଡ଼ ଦ୍ୱୀପ ପାଖରେ ପହଞ୍ଚିଲା । ବେଶ୍ ଉର୍ବର ଦ୍ୱୀପ । ଅଡ଼ିସିଅସ୍ ଦେଖିଲେ, ସେ ଦ୍ୱୀପରେ ଅନେକ ହୃଷ୍ଟପୁଷ୍ଟ ମେଣ୍ଢା ଚରୁଛନ୍ତି । ସେଠାରୁ କିଛି ଖାଦ୍ୟପେୟ ମିଳିବାର ସମ୍ଭାବନା ଦେଖି ସେ ଜାହାଜ ଅଟକାଇଲେ । ତେବେ ଅଜଣା ଦ୍ୱୀପକୁ ହଠାତ୍ ପଶିଯିବା ଠିକ୍ ନୁହେଁ । ଗୋଟିଏ ପହାଡ଼ ଉହାଡ଼ରେ ଜାହାଜ ଲୁଚାଇ ବାରଜଣ ସଙ୍ଗୀକୁ ଧରି ଅଡ଼ିସିଅସ୍ ଚାଲିଲେ ଦ୍ୱୀପ ଭିତରକୁ ।

ବୁଲି ବୁଲି ସେମାନେ ଗୋଟିଏ ବଡ଼ ଗୁମ୍ଫା ପାଖରେ ପହଞ୍ଚିଲେ । ସେ ଗୁମ୍ଫାରେ ପ୍ରଚୁର କ୍ଷୀର, ଛେନା ରଖା ହୋଇଛି । ନିଶ୍ଚୟ କେଉଁ ମେଷ ପାଳକର ଗୁମ୍ଫା । ତାରି ଠାରୁ କିଛି ଛେନା ଓ କ୍ଷୀର କିଣିବା ଉଦ୍ଦେଶ୍ୟରେ ସଙ୍ଗୀମାନଙ୍କ ସହିତ ଅଡ଼ିସିଅସ୍ ଅପେକ୍ଷା କଲେ । ସନ୍ଧ୍ୟା ହେଲା । ଆଉ କେତେ ଭୋକ ସମ୍ଭାଳିବେ ? ସମସ୍ତେ ପେଟେ ଲେଖାଏଁ ଛେନା ଖାଇଲେ ।

ସୂର୍ଯ୍ୟ ବୁଡ଼ିଛି କି ନାହିଁ ପଲେ ମେଣ୍ଢା ଅଡ଼େଇ ମାଲିକ ଆସି ପହଞ୍ଚିଗଲା । ଗୁମ୍ଫାର ମାଲିକ ଗୋଟାଏ ଭୟଙ୍କର ରାକ୍ଷସ । ତାର ତକ ପରି ଗୋଟିଏ ମାତ୍ର ଆଖି କପାଳରେ (ଏପରି ରାକ୍ଷସକୁ ସାଇକ୍ଲୋପ୍ସ କହନ୍ତି) । ଗୋଟିଏ ଶୁଖିଲା ଗଛ କାନ୍ଧେଇ ରାକ୍ଷସ ଆସି ପହଞ୍ଚିଗଲା ଓ ଭିତରକୁ ପଶିଆସି ଗୋଟିଏ ବିରାଟ ପଥରଟାଏ ଟାଣିଆଣି ଗୁମ୍ଫାର ମୁହଁ ବନ୍ଦ କରିଦେଲା । ଷୋଳଏ ହଳ ବଳଦ ସେ ପଥରକୁ ଘୁଞ୍ଚେଇ ପାରିବେ କି ନାହିଁ ସନ୍ଦେହ ।

ରାକ୍ଷସକୁ ଦେଖି ସମସ୍ତଙ୍କର ପିଳେହି ପାଣି । ଭୟରେ ମୁଣ୍ଡ ଗୁଡ଼ୁଗୁଡ଼ୁ ହୋଇ ସମସ୍ତେ ଗୋଟିଏ କୋଣରେ ଯାଇ ପଶିଲେ ।

ରାକ୍ଷସ ପ୍ରଥମେ ତାର ଛେଳି ମେଣ୍ଢାଙ୍କୁ ଦୁହିଁଲା । ତା ପରେ ଚୁଲି ପାଖକୁ ଯାଇ ନିଆଁ ଜାଳିଲା । ନିଆଁ ଆଲୁଅରେ ଦେଖିଲା, କୋଣରେ ମଣିଷ କେଇଟା ଯାକଯୁକ ହୋଇ ବସିଛନ୍ତି । ସେମାନଙ୍କୁ ଦେଖି ଅଟ୍ଟହାସ୍ୟ କରିଉଠିଲା ।

"ତମେ ସବୁ କିଏରେ ?" ରାକ୍ଷସର ଗର୍ଜନ ଶୁଣି କାହାରି ପାଟିରୁ କଥା ବାହାରିଲା ନାହିଁ । ବହୁତ ସାହାସ ସଞ୍ଚୟ କରି ଅଡ଼ିସିଅସ୍ କହିଲେ, ଆମେ ଆଜ୍ଞା କେଇଜଣ ହତଭାଗ୍ୟ ଗ୍ରୀକ୍ । ଟ୍ରୟରୁ ଫେରୁଥିଲୁ ଝଡ଼ରେ ଆମର ଜାହାଜ ଭାଙ୍ଗିଗଲା । ସମସ୍ତେ ମଲେ । ଆମେ କେଇଜଣ ବଞ୍ଚି ଏଇଠି ଆଶ୍ରୟ ନେଇଛୁ ।"

ଅଧିକ କିଛି ଜାଣିବାକୁ ରାକ୍ଷସର ଆଗ୍ରହ ନଥିଲା । ହାତ ବଢ଼େଇ ସେ ଦୁଇ ଜଣକୁ ଧରି ଆଣିଲା ଓ ପଥରରେ ଛେଚିଦେଇ କଡମଡ଼ କରି ଚୋବାଇ ଖାଇଲା । ଦୁଇଜଣ ସଙ୍ଗୀଙ୍କର ଏ ଦଶା ଦେଖି ଅନ୍ୟମାନେ ପଥର ପାଲଟି ଗଲେ ।

ସକାଳ ହେଲା । ରାକ୍ଷସ ପୁଣି ଛେଳି ମେଣ୍ଢାଙ୍କୁ ଦୁହିଁଲା । ଆଉ ଦୁଇଟି ଗ୍ରୀକ୍‌ଙ୍କୁ ଜଳଖିଆ କରି ତାର ପଶୁ ପଲ ଧରି ବାହାରିଗଲା । ଗଲାବେଳେ ଗୁମ୍ଫା ଦୁଆର ବନ୍ଦ କରି ଦେବାକୁ ଭୁଲି ନଥିଲା ଅବଶ୍ୟ ।

ସେ ପଥରକୁ ହଟେଇବା ଦୂରର କଥା, ହଲେଇବା ମଧ୍ୟ ମଣିଷ କେ ଟାଙ୍କ ପକ୍ଷରେ ଅସମ୍ଭବ । କେବଳ ବୁଦ୍ଧିବଳରେ ଏ ରାକ୍ଷସ କବଳରୁ ରକ୍ଷା ମିଳି ପାରେ । ଦିନଯାକ ଲାଗି ଅଡ଼ିସିଅସ୍ ଓ ତାଙ୍କର ସଙ୍ଗୀମାନେ ଗୋଟାଏ ଶକ୍ତ ଓ ଲମ୍ବ କାଠଗଣ୍ଡିକୁ ମୁନିଆ କରି ଘଷିଗଦା ଭିତରେ ଲୁଚାଇ ରଖିଲେ । ଏହା ପରେ ଅଡ଼ିସିଅସ୍ ତାଙ୍କର ଯୋଜନାଟି ଅନ୍ୟମାନଙ୍କୁ ବୁଝାଇଦେଲେ ।

ସଂଧ୍ୟା ବେଳେ ରାକ୍ଷସ ଆସି ପହଞ୍ଚିଲା ଓ ଦୁଇଟି ସୈନ୍ୟଙ୍କୁ ଧରିନେଇ ରାତି ଭୋଜନ ସାରିଲା । ଅଡ଼ିସିଅସ୍ ଖୁବ୍ ସାହାସ ସଞ୍ଚୟ

କରି ରାକ୍ଷସ ପାଖକୁ ଯାଇ ତାକୁ ଗୋଟିଏ ପାତ୍ରରେ କିଛି ପାନୀୟ ଯାଚିଲେ । ତାହା ଥ୍ରେସରୁ ଆଣିଥିବା ଉତ୍କୃଷ୍ଟ ମଦ । ଏକା ନିଶ୍ୱାସକେ ସେତକ ଢୋକ ଦେଇ ରାକ୍ଷସ ଖାଲି ପାତ୍ର ବଢ଼ାଇଦେଲା ! ଦୁଇ ଚାରି ଗ୍ଲାସ ପିଇଦେବା ପରେ ରାକ୍ଷସ ଜାଣିପାରିଲା ଯେ ଏତେ ବଢ଼ିଆ ପାନୀୟ ସେ କେବେ ପିଇନାହିଁ ।

ମଦ ପିଉ ପିଉ ସେ ଅଡ଼ିସିଅସ୍‌କୁ ତାଙ୍କ ନାମ ପଚାରିଲା । ଅଡିସିଅସ୍ କହିଲେ, ତାଙ୍କର ନାଁ "କେହି ନୁହେଁ ।" ବଡ଼ ଅଜବ ନାଁ । ତେବେ କେହି ନୁହେଁ ଜଣେ ଭଲ ମଣିଷ । ରାକ୍ଷସ କହିଦେଲା ଯେ ସେ କେହି ନୁହେଁ କୁ ସବା ପଛରେ ଖାଇବ ।

ସବୁତକ ମଦ ପିଇ ରାକ୍ଷସ ନିଘୋଡ଼ ନିଦରେ ଶୋଇ ପଡ଼ିଲା । ଏହାପରେ ଅଡ଼ିସିଅସ୍ ଓ ତାଙ୍କ ସଙ୍ଗୀମାନେ ମିଶି ଦିନରୁ ତିଆରି କରିଥିବା କାଠଗଣ୍ଡିର ମୁନିଆ ଅଗରୁ ଆଚ୍ଛାକରି ନିଆଁରେ ଗରମ କଲେ । ସେଇଟା ଦରପୋଡ଼ା ହେବାରୁ ସମସ୍ତେ ମିଶି ତାକୁ ରାକ୍ଷସ ଆଖିରେ ମାଡ଼ିଦେଲେ । ଯନ୍ତ୍ରଣାରେ ବିକଟାଳ ରଡ଼ି କରି ରାକ୍ଷସ ନିଦରୁ ଉଠିଲା । ତା ଆଖି ଫୁଟି ଯାଇଥାଏ । ଅଡ଼ିସିଅସ୍ ଓ ତାଙ୍କର ସଙ୍ଗୀ-ମାନଙ୍କୁ ଦରାଣ୍ଡି ସେ ପାଇଲା ନାହିଁ ।

ରାକ୍ଷସର ବିକଳ ରଡ଼ି ଶୁଣି ଆଖପାଖ ଗୁମ୍ଫାରୁ କେତେକ ରାକ୍ଷସ ଆସି ପହଞ୍ଚିଗଲେ । ରାକ୍ଷସକୁ ସେମାନେ ପଚାରିଲେ, "ଖାଲିରେ କାହିଁକି ରଡ଼ିଛୁ ? କିଏ ତୋର କ'ଣ କଲା ?

"କେହି ନୁହେଁ । କେହି ନୁହେଁ ଯୋଗୁ ମୁଁ ଏ କଷ୍ଟ ପାଉଛି ।' ମାଠିଆଏ ଖଣ୍ଡେ କଡ଼ା ମଦ ପିଇଥିବାରୁ ରାକ୍ଷସ ଭଲକରି କିଛି କହିପାରୁ ନଥାଏ । ତାର ବାଉର ଗୁଜୁଳିଆ କଥା ଶୁଣି ରାକ୍ଷସ ମାନେ ବିରକ୍ତ ହୋଇଗଲେ । "ଯଦି କେହି ତୋର କିଛି କରି ନାହାନ୍ତି । ତେବେ ଚୁପ୍ କରି ପଡ଼ । ଯାହା ଦେହ କଷ୍ଟ ହେଉଛି ସକାଳକୁ ଭଲ ହୋଇ ଯିବ । ରଡ଼ି ବନ୍ଦ କର । ଆମେ ଟିକିଏ ଶୋଉ ।"

ଏହା କହି ରାକ୍ଷାସମାନେ ଯେଝା ଘରକୁ ଫେରିଗଲେ । ସକାଳ ହେଲା । ଦୁଆର ଖୋଲିଦେଇ ରାକ୍ଷାସ ଗୁମ୍ଫା ମୁହଁରେ ଜଗି ବସିଲା । ମେଣ୍ଢାମାନେ ଗୋଟିଏ ଗୋଟିଏ କରି ବାହାରିଲେ । ମଣିଷକିଏ ଯାଉଛି କି ନାହିଁ ରାକ୍ଷାସ ପରୀକ୍ଷା କରି ଦେଖୁଥାଏ । ଶେଷରେ ତାର ଅତିପ୍ରିୟ ବୋଦା ଆସିଲା । ରାକ୍ଷସ ତାକୁ ଆଉଁସି କହିଲା, "ଦୁଆର ଖୋଲିଲେ ତ ତୁ ସବୁଦିନେ ଆଗ ଡ଼ିଆଁ ମାରି ପଳାଉ । ଆଜି ନିଶ୍ଚେ ମୋ ଦଶା ଦେଖି କାତର ହୋଇ ଯାଇଛୁ ।

ମାଲିକ ଦଶାରେ ମେଣ୍ଢାର କେତେ ଦୁଃଖ କେଜାଣି, ସେ କିନ୍ତୁ ଏକ ଭିନ୍ନ କାରଣରୁ ଦୌଡ଼ି ପାରୁ ନଥିଲା । କାରଣ ତା ପେଟକୁ ଜାକିଧରି ଅଡ଼ିସିଅସ୍ ଲୁଚି ରହିଥିଲେ । ଏହି ଉପାୟରେ ସେ ରାକ୍ଷାସ କବଳରୁ ଖସି ଆସିଲେ । ଅନ୍ୟମାନେ ମଧ୍ୟ ମେଣ୍ଢା ପେଟତଳେ ଲୁଚି ବାହାରି ଯାଇଥିଲେ ।

ଜାହାଜକୁ ଫେରିଆସି ଅଡ଼ିସିଅସ୍ ସଙ୍ଗେ ସଙ୍ଗେ ସେ ଭୟଙ୍କର ଦ୍ୱୀପ ଛାଡ଼ିଲେ । ଗଲାବେଳେ ବଡ଼ପାଟିରେ କହିଲେ, ଆରେ ରାକ୍ଷାସ ! କିଏ ପଚାରିଲେ ଇଥାକାର ରାଜା ଅଡିସିଅସ୍ ତୋ ଆଖି ଫୁଟାଇଛି ବୋଲି କହିବୁ । ମୁଁ ଅଡ଼ିସିଅସ୍—କେହି ନୁହେଁ ନୁହେଁ ।"

ଅଡ଼ିସିଅସ୍‌ଙ୍କ ପାଟି ଶୁଣି ରାକ୍ଷାସ ଦୌଡିଆସି ସମୁଦ୍ର ଭିତରକୁ ଗୋଟିଏ ବିରାଟ ପଥର ଫୋପାଡ଼ିଲେ । ଆଉଟିକକରେ ସେ ପାହାଡ଼ପ୍ରାୟ ପଥର ଜାହାଜରେ ବାଜିଥାଆନ୍ତା । ଯାହାହେଉ ଅଡ଼ିସିଅସ୍ ବଞ୍ଚି କରି ଖସିଗଲେ ।

ଅନ୍ୟ ଦ୍ୱୀପମାନଙ୍କରେ ତାଙ୍କୁ ଆଉ କେତେ ବିପଦ ଅପେକ୍ଷା କରିଥିଲା ।



## କିଶୋର ସଂସାର—୪




ନୂଆ ଡେଣା କଅଁଳଥିବା ଚଢ଼େଇଛୁଆ ପରି କିଶୋର କିଶୋରୀ ଅଜଣା ଅଦେଖା ରାଜ୍ୟକୁ ଉଡ଼ିଯିବା ପାଇଁ ଅଥୟ ହୁଅନ୍ତି । ଏହା କୈଶୋରର ଧର୍ମ । 'କିଶୋର ସଂସାର' ସିରିଜ୍‌ର ବହିଟିଏ କିଶୋର କିଶୋରୀଙ୍କୁ ଏକ ନୂତନ ରାଜ୍ୟକୁ ନିମନ୍ତ୍ରଣ କରିନପାରୁ । ସେମାନଙ୍କର ମାନସିକ କ୍ଷୁଧା ପୂରଣ କରିବାକୁ କିଛି ଖାଦ୍ୟ ପରଷିବଏ ।

ଏବଂ ଏ ସିରିଜ୍‌ର ବହି ସବୁ ଯେ କେବଳ କିଶୋର କିଶୋରୀଙ୍କ ପାଇଁ ଉଦ୍ଦିଷ୍ଟ ତା ନୁହେଁ । ଯେଉଁମାନଙ୍କ ଭିତରେ କୈଶୋର ଚିର ଜୀବନ୍ତ, ସେମାନେ ବହିଗୁଡ଼ିକରୁ ଆନନ୍ଦ ପାଇବେ ବୋଲି ମଧ୍ୟ ଆମର ବିଶ୍ୱାସ ।

